# ଭର୍ତ୍ତୃହରି
# ନୀତିଶତକ

ସଂପାଦନା: ଡକ୍ଟର ଭଗବାନ ପଣ୍ଡା

ସଂସ୍କୃତ ସାହିତ୍ୟ ସମ୍ଭାର

କବି ଭର୍ତ୍ତୃହରି-ବିରଚିତ

# ନୀତିଶତକ

ସମ୍ପାଦକ

ଡକ୍ଟର ଭଗବାନ ପଣ୍ଡା

ଗ୍ରନ୍ଥମନ୍ଦିର

# ମୁଖବନ୍ଧ

ସଂସ୍କୃତ ସାହିତ୍ୟର ଇତିହାସରେ କବି ଭର୍ତ୍ତୃହରିଙ୍କ ନାମ ଚିରସ୍ମରଣୀୟ । ଭାରତରେ ସର୍ବତ୍ର ଭର୍ତ୍ତୃହରିଙ୍କ ଶତକତ୍ରୟ ସୁବିଦିତ, ସୁପ୍ରଶଂସିତ ଓ ସମାଦୃତ ହୋଇଥିଲେ ମଧ୍ୟ ତାଙ୍କର ପରିଚୟ ଓ ସମୟ ବିଷୟରେ ଏପର୍ଯ୍ୟନ୍ତ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ଲୋକଲୋଚନକୁ ଆସିପାରିନାହିଁ । ଆଲୋଚକମାନେ ଭର୍ତ୍ତୃହରିଙ୍କ ସମ୍ବନ୍ଧରେ ନାନାପ୍ରକାର ମତ ପ୍ରକାଶ କରିଥିବାର ଦେଖାଯାଏ, କାରଣ କବିଙ୍କ ରଚନାବଳୀରୁ ତାଙ୍କ ପରିଚୟ ସମ୍ବନ୍ଧରେ କୌଣସି ସୂଚନା ମିଳେ-ନାହିଁ । କବି ମାଳବର ଏକ କ୍ଷତ୍ରିୟ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ବୋଲି କିମ୍ବଦନ୍ତୀରୁ ଜଣାଯାଏ । ସେହି କିମ୍ବଦନ୍ତୀ ଅନୁସାରେ କବିଙ୍କ ପିତା ଗନ୍ଧର୍ବ ସେନଙ୍କର ଦୁଇ ପତ୍ନୀ ଥିଲେ । ପ୍ରଥମା ପତ୍ନୀର ସନ୍ତାନ ଥିଲେ ଭର୍ତ୍ତୃହରି । ଦ୍ୱିତୀୟା ପତ୍ନୀ ଥିଲେ ଧାରାନଗରର ରାଜକନ୍ୟା । ତାଙ୍କଠାରୁ ବିକ୍ରମାଦିତ୍ୟ ଜନ୍ମଗ୍ରହଣ କରିଥିଲେ । ଧାରାନଗରର ନରପତି ଥିଲେ ସନ୍ତାନହୀନ । ତେଣୁ ଗନ୍ଧର୍ବସେନଙ୍କ ମୃତ୍ୟୁପରେ ତାଙ୍କ ଦୁଇପୁଅ ଭର୍ତ୍ତୃହରି ଓ ବିକ୍ରମ ମାତାମହଙ୍କ ଦ୍ୱାରା ଲାଳିତପାଳିତ ହୋଇଥିଲେ । ଦୁଇଭାଇ ସେଠାରେ ସମସ୍ତ ବିଦ୍ୟାରେ ପାରଦର୍ଶିତା ଲାଭକଲେ । ମାତାମହଙ୍କ ନିର୍ଦ୍ଦେଶରେ ଭର୍ତ୍ତୃହରି ରାଜପଦରେ ଅଭିଷିକ୍ତ ହେଲେ ଏବଂ ବିକ୍ରମାଦିତ୍ୟ ପ୍ରଧାନମନ୍ତ୍ରୀ ରୂପେ ରାଜ୍ୟ ପରିଚାଳନା କଲେ ।

ରାଜା ଭର୍ତ୍ତୃହରି ସାନଭାଇ ବିକ୍ରମ ଉପରେ ରାଜ୍ୟଭାର ଦେଇ ଆରମ୍ଭରୁ ଭୋଗବିଳାସରେ ନିମଜ୍ଜିତ ହୋଇପଡ଼ିଲେ । ସାନଭାଇ ବିକ୍ରମ ଯେତେ ସତ୍ପରାମର୍ଶ ଦେଲେ ମଧ୍ୟ ତାହା ଫଳବତୀ ହେଲା ନାହିଁ । ଶେଷରେ ଦୁଇଭାଇଙ୍କ ମଧ୍ୟରେ ବିବାଦ ସୃଷ୍ଟି ହେଲା ଏବଂ ବିକ୍ରମ ମନ୍ତ୍ରୀପଦ ତ୍ୟାଗକରି ଭାରତ ପର୍ଯ୍ୟଟନରେ ଚାଲିଗଲେ । ରାଜ୍ୟରେ ଚରମ ଅରାଜକତା ସୃଷ୍ଟି ହେଲା । ଦିନେ ଜନୈକା ମହିଷୀ ଅନଙ୍ଗସେନା, ପଦ୍ମାକ୍ଷୀ ବା ଭାନୁମତୀ

ନଜର ଦୁଷ୍ଟଚରିତ୍ରତା ପ୍ରମାଣ ହୋଇଯିବାରୁ ଭର୍ତ୍ତୃହରିଙ୍କ ଆଗରେ ଆତ୍ମହତ୍ୟା କଲେ । ଆଉ ଦିନେ ମିଥ୍ୟା ସମ୍ବାଦରେ ମର୍ମାହତ ହୋଇ ରାଜା ଭର୍ତ୍ତୃହରିଙ୍କ ଅନ୍ୟତମା ପତିବ୍ରତା ମହିଷୀ ପିଙ୍ଗଳା ମୃତ୍ୟୁବରଣ କଲେ । ଏହି ଘଟଣାରେ ଅତ୍ୟଧିକ ଦୁଃଖିତ ଓ ମର୍ମାହତ ହୋଇ ଭର୍ତ୍ତୃହରି ରାଜ୍ୟ ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିଥିଲେ । ତାଙ୍କ ସ୍ଥାନରେ ବିକ୍ରମ ରାଜ୍ୟଭାର ଗ୍ରହଣ କରି ରାଜା ବିକ୍ରମାଦିତ୍ୟ ନାମରେ ପରିଚିତ ହୋଇଥିଲେ ।

ଭାରତର କେତେକ ଅଞ୍ଚଳରେ ଭର୍ତ୍ତୃହରିଙ୍କ ଜନ୍ମ ସମ୍ବନ୍ଧରେ ଅନ୍ୟ ଏକ ଜନଶ୍ରୁତି ପ୍ରଚଳିତ ଥିବାର ଜଣାଯାଏ । ସେଥିରୁ ସୂଚନା ମିଳେ, ଚନ୍ଦ୍ରଗୁପ୍ତ ନାମରେ ଜନୈକ ବ୍ରାହ୍ମଣଙ୍କର ଚାରିବର୍ଣ୍ଣରୁ ଚାରୋଟି ପତ୍ନୀ ଥିଲେ । ବ୍ରାହ୍ମଣୀ ଗର୍ଭଜାତ ପୁତ୍ର ବରରୁଚି, କ୍ଷତ୍ରିୟା ଗର୍ଭଜାତ ପୁତ୍ର ବିକ୍ରମ, ବୈଶ୍ୟା ଗର୍ଭଜାତ ପୁତ୍ର ଭଟ୍ଟି ଓ ଶୂଦ୍ରା ଗର୍ଭଜାତ ପୁତ୍ର ଭର୍ତ୍ତୃହରି ନାମରେ ପରିଚିତ ଥିଲେ । ବିକ୍ରମାଦିତ୍ୟ ରାଜପଦରେ ଅଭିଷିକ୍ତ ହେବାପରେ ଭଟ୍ଟି ଓ ଭର୍ତ୍ତୃହରି ତାଙ୍କ ଅଧୀନରେ ମନ୍ତ୍ରୀରୂପେ ଏବଂ ବରରୁଚି ରାଜପରିଷଦର ପ୍ରଧାନ ପଣ୍ଡିତରୂପେ ନିଯୁକ୍ତ ହୋଇଥିଲେ । ନବରତ୍ନ ସମ୍ବନ୍ଧରେ ପ୍ରଚଳିତ ଶ୍ଳୋକରୁ ଏ ବିଷୟରେ କିଞ୍ଚିତ୍ ସୂଚନା ମିଳେ । ସେହି ଶ୍ଳୋକଟି ହେଲା—

ଧନ୍ୱନ୍ତରିକ୍ଷପଣକାମରସିଂହଶଙ୍କୁ-
ବେତାଳଭଟ୍ଟଘଟକର୍ପରକାଳିଦାସାଃ ।
ଖ୍ୟାତୋ ବରାହମିହିରୋ ନୃପତେଃ ସଭାୟାଂ
ରତ୍ନାନି ବୈ ବରରୁଚିର୍ନବ ବିକ୍ରମସ୍ୟ ॥

ଏହି ଶ୍ଳୋକ ବର୍ଣ୍ଣିତ କ୍ଷପଣକ କବି ଭର୍ତ୍ତୃହରିରୂପେ ଗୃହୀତ । ଭର୍ତ୍ତୃହରିଙ୍କ ସମୟ ନିର୍ଦ୍ଧାରଣ ପ୍ରସଙ୍ଗରେ କେତେକ ଆଲୋଚକ ଉଦ୍ଧୃତ ଶ୍ଳୋକକୁ ଭିତ୍ତିଭୂମି ରୂପେ ସ୍ୱୀକାର କରନ୍ତି । ଅନ୍ୟ କେତେକଙ୍କ ମତରେ ଭର୍ତ୍ତୃହରି ଚଉଦବର୍ଷ ରାଜତ୍ୱ କରିଥିଲେ । ତେଣୁ ରାଜା ବିକ୍ରମଙ୍କ (୫୭—ଖ୍ରୀ:ପୂ:) ପୂର୍ବରୁ କବି ଭର୍ତ୍ତୃହରିଙ୍କ ସମୟ ଖ୍ରୀଷ୍ଟପୂର୍ବ—୭୦ ବୋଲି ସ୍ଥିର କରା-ଯାଇପାରେ । ପଣ୍ଡିତ ଦୁର୍ଗାପ୍ରସାଦ ଓ ଅନ୍ୟ କେତେକଙ୍କ ମତରେ ଭର୍ତ୍ତୃହରି ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ମଧ୍ୟଭାଗରେ ବର୍ତ୍ତମାନ ଥିଲେ ।

ଚୀନ ପରିବ୍ରାଜକ ଇତ୍‌ସିଂ (୬୯୧ ଖ୍ରୀ:ଅ:) ତାଙ୍କ ଭାରତ ଭ୍ରମଣ ବୃତ୍ତାନ୍ତରେ ଭର୍ତ୍ତୃହରିଙ୍କ ସମ୍ବନ୍ଧରେ କେତେକ ସୂଚନା ଦେଇଛନ୍ତି । ସେଥିରୁ ବ୍ୟାକରଣକାର ଭର୍ତ୍ତୃହରି ୬୫୧ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କରିଥିବାର ଜଣାଯାଏ । ବ୍ୟାକରଣପ୍ରଣେତା ଭର୍ତ୍ତୃହରି ବାକ୍ୟପଦୀୟ, ମହାଭାଷ୍ୟଦୀପିକା, ଶବ୍ଦଧାତୁସମୀକ୍ଷା, ମୀମାଂସାଭାଷ୍ୟ ଓ ବେଦାନ୍ତସୂତ୍ରବୃତ୍ତି ରଚନା କରିଥିଲେ । ରାମାୟଣ ସମ୍ବନ୍ଧୀୟ 'ଭଟ୍ଟିକାବ୍ୟ' ମଧ୍ୟ ଭର୍ତ୍ତୃହରିଙ୍କ ରଚନା । ତେଣୁ କେତେକ ଆଲୋଚକ ବ୍ୟାକରଣକାର, ଦାର୍ଶନିକ ଓ କାବ୍ୟକାର ରୂପେ ତିନିଜଣ ଭର୍ତ୍ତୃହରି ଥିବାର ମତ ଦେବାବେଳେ ଆଉ କେତେକ ଶତକତ୍ରୟର ରଚୟିତା ଓ 'ବାକ୍ୟପଦୀୟ' ବ୍ୟାକରଣ ଗ୍ରନ୍ଥର ରଚୟିତା ଭର୍ତ୍ତୃହରିଙ୍କୁ ଅଭିନ୍ନ ବ୍ୟକ୍ତି ବୋଲି ମନେକରନ୍ତି । କିନ୍ତୁ ଏହି ସିଦ୍ଧାନ୍ତ ପ୍ରମାଣ ଆଧାରିତ ନୁହେଁ । ବିଭିନ୍ନ ଦୃଷ୍ଟିରୁ ବିବେଚନା କରି ଆଲୋଚକ ପଣ୍ଡିତ ଗୋପୀନାଥ ପୁରୋହିତ ତାଙ୍କ 'ଭର୍ତ୍ତୃହରି ଶତକ' (ବମ୍ବେ, ୧୯୧୪) ଗ୍ରନ୍ଥରେ ଓ କାଶୀନାଥ ତ୍ର୍ୟମ୍ବକ ତେଲଙ୍ଗ ତାଂକ ଗ୍ରନ୍ଥରେ (ବମ୍ବେ ସଂସ୍କୃତ ସିରିଜ, ଭାଗସଂଖ୍ୟା-୧୧) ଯେଉଁ ସିଦ୍ଧାନ୍ତ ନେଇଛନ୍ତି ସେଥିରୁ ଭର୍ତ୍ତୃହରିଂକ ସମୟ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ବୋଲି ଜଣାଯାଏ । ଅନେକ ଏହି ମତକୁ ସ୍ୱୀକାର କରିଛନ୍ତି ।

କବି ଭର୍ତ୍ତୃହରି ନୀତିଶତକ, ଶୃଙ୍ଗାରଶତକ ଓ ବୈରାଗ୍ୟଶତକ ନାମରେ ଶତକତ୍ରୟର ରଚୟିତା ରୂପେ ପ୍ରସିଦ୍ଧ । କିନ୍ତୁ ଏହି ଶତକ ତିନୋଟି ଭର୍ତ୍ତୃହରିଙ୍କ ରଚନା କି ସଂଗୃହୀତ ଶ୍ଳୋକ ସମଷ୍ଟି, ସେ ବିଷୟରେ ମଧ୍ୟ ମତଭେଦ ଅଛି । କାରଣ ଭାରତରେ ଏହି ଶତକତ୍ରୟର ଯେତୋଟି ସଂସ୍କରଣ ମିଳିଛି ସେଥିରେ ଶ୍ଳୋକ, ଶ୍ଳୋକସଂଖ୍ୟା ଓ ବିଷୟବସ୍ତୁ ଦୃଷ୍ଟିରୁ ସମତା ପରିଲକ୍ଷିତ ହୁଏନାହିଁ । ପୂର୍ବବର୍ତ୍ତୀ କବିମାନଙ୍କ କେତେକ ଶ୍ଳୋକ ସାମାନ୍ୟ ପରିବର୍ତ୍ତନ ସହିତ ଆଲୋଚ୍ୟ ଶତକରେ ସନ୍ନିବେଶିତ ଥିବାର ଦେଖାଯାଏ । କେତେକ ସଂସ୍କରଣରେ ନୀତିଶତକର ଶ୍ଳୋକ ବୈରାଗ୍ୟଶତକରେ ଓ ବୈରାଗ୍ୟଶତକର ଶ୍ଳୋକ ଶୃଙ୍ଗାରଶତକରେ ଏବଂ ଶୃଙ୍ଗାରଶତକର ଶ୍ଳୋକ ନୀତି ବା ବୈରାଗ୍ୟଶତକରେ ଥିବାର ପରିଲକ୍ଷିତ ହୁଏ । ବିଭିନ୍ନ

ବୈଷମ୍ୟ ସତ୍ତ୍ୱେ ସେଥିରେ ଭାବ ଓ ଭାଷାର ସାମଞ୍ଜସ୍ୟ ରକ୍ଷାକରି ରଚିତ ଓ ଅନ୍ତର୍ଭୁକ୍ତ ହୋଇଥିବା ବହୁ ଶ୍ଳୋକ ଜଣକର ରଚନା ବୋଲି ସ୍ୱୀକାର କରାଯାଇପାରେ ।

ସଂସ୍କୃତ କାବ୍ୟ ସାହିତ୍ୟରେ ମୁକ୍ତକ କାବ୍ୟ ଏକ ସ୍ୱତନ୍ତ୍ର ଶୈଳୀରେ ରଚିତ । ଯେଉଁ ରଚନାରେ ପ୍ରତ୍ୟେକ ଶ୍ଳୋକ, ରସ, ଭାବ ଓ ପ୍ରତିପାଦ୍ୟ ବିଷୟ ଦୃଷ୍ଟିରୁ ସ୍ୱୟଂସମ୍ପୂର୍ଣ୍ଣ ତାହା ମୁକ୍ତକ କାବ୍ୟ ନାମରେ ଅଭିହିତ । ସେଥିପାଇଁ ଅଗ୍ନିପୁରାଣରେ କୁହାଯାଇଛି—ମୁକ୍ତକଂ ଶ୍ଳୋକ ଏବୈକଶ୍ଚ-ମତ୍କାରକ୍ଷମଃ ସତାମ୍ । କବି ଭର୍ତ୍ତୃହରିଙ୍କ ଶତକ ତ୍ରୟ ଏହି ମୁକ୍ତକ କାବ୍ୟ ଶ୍ରେଣୀର ଅନ୍ତର୍ଗତ । ନୀତି, ଶୃଙ୍ଗାର ଓ ବୈରାଗ୍ୟ ବିଷୟ ଆଧାରରେ ରଚିତ ହୋଇଥିବାରୁ ଶତକତ୍ରୟ ଯଥାକ୍ରମେ ନୀତିଶତକ, ଶୃଙ୍ଗାରଶତକ ଓ ବୈରାଗ୍ୟଶତକ ନାମରେ ଅଭିହିତ ।

କବି ଭର୍ତ୍ତୃହରିଙ୍କ ନୀତିଶତକରେ ଅଜ୍ଞ, ପଣ୍ଡିତ, ମାନ, ଶୌର୍ଯ୍ୟ, ଅର୍ଥ, ଦୁର୍ଜନ, ସୁଜନ, ପରୋପକାର, ଧୈର୍ଯ୍ୟ, କର୍ମ, ଦୈବ ପ୍ରଭୃତି ସମ୍ବନ୍ଧରେ ବିଭିନ୍ନ ଦିଗରୁ ଆଲୋକପାତ କରାଯାଇଛି । ନ୍ୟାୟଧର୍ମ ପ୍ରତିଷ୍ଠା, ଆତ୍ମ-ମର୍ଯ୍ୟାଦାର ସୁରକ୍ଷା ଓ ଶୃଙ୍ଖଳିତ ସମାଜ ଗଠନହିଁ ନୀତିଶତକ ରଚନାର ମୂଳ ଲକ୍ଷ୍ୟ । ସେହିପରି ଶୃଙ୍ଗାରଶତକରେ ସ୍ତ୍ରୀ ପ୍ରଶଂସା, ଶୃଙ୍ଗାର, ପକ୍ଷଦ୍ୱୟ (ଶୃଙ୍ଗାର ଓ ବୈରାଗ୍ୟ) ନିରୂପଣ, କାମିନୀନିନ୍ଦା, ସୁବିରକ୍ତ ଓ ଦୁର୍ବିରକ୍ତର ପଦ୍ଧତି, ଋତୁବର୍ଣ୍ଣନାଦି ପ୍ରସଙ୍ଗ ରହିଛି । ବୈରାଗ୍ୟଶତକରେ ତୃଷ୍ଣା, ବିଷୟ-ବାସନା ତ୍ୟାଗ, ଭିକ୍ଷାକାର୍ଯ୍ୟଜନିତ ଦୋଷ, ଭୋଗ୍ୟବସ୍ତୁର ନଶ୍ୱରତା, ମହାକାଳ ମହିମା, ଯତିନୃପତି ସମ୍ବାଦ, ସଂଯମ, ନିତ୍ୟାନିତ୍ୟବସ୍ତୁ ବିଚାର, ଶିବାର୍ଚ୍ଚନ, ଅବଧୂତଚର୍ଯ୍ୟା ବର୍ଣ୍ଣିତ ହୋଇଛି । ସର୍ବୋପରି ଭର୍ତ୍ତୃହରିଙ୍କ ରଚନାରେ କାବ୍ୟିକ ସୌନ୍ଦର୍ଯ୍ୟ ସୁରକ୍ଷିତ ହେବା ସଙ୍ଗେ ସଙ୍ଗେ ନୀତି ଉପଦେଶ, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ଦର୍ଶନ ଓ ଆଧ୍ୟାତ୍ମ ଜ୍ଞାନର ଅପୂର୍ବ ସମନ୍ୱୟ ସାଧିତ ହୋଇଛି । ସେହି ଦୃଷ୍ଟିରୁ ଭାରତରେ ସର୍ବତ୍ର ଏହା ସର୍ବାଧିକ ଆଦୃତି ଲାଭକରିଛି ।

ପ୍ରସ୍ତୁତ ପୁସ୍ତକରେ ଉକ୍ତ ସଂସ୍କରଣରେ ସମତା ରକ୍ଷା କରୁଥିବା ଶ୍ଳୋକଗୁଡ଼ିକୁ ମୂଳ ପାଠ ରୂପେ ନେଇ ଅନ୍ୟ ଅଧିକ ଶ୍ଳୋକଗୁଡ଼ିକ ପରିଶିଷ୍ଟରେ ଦିଆଯାଇଛି । ସାଧାରଣ ପାଠକଙ୍କୁ ସଂସ୍କୃତ ସାହିତ୍ୟର ରତ୍ନଭଣ୍ଡାର ବିଷୟରେ ସାମାନ୍ୟଧାରଣା ଦେବାପାଇଁ ଏହି ଅନୁବାଦ ପ୍ରସ୍ତୁତ ହୋଇଛି । ସୁଧୀ ପାଠକବର୍ଗ ତ୍ରୁଟି ବିଚ୍ୟୁତି ପ୍ରତି ଦୃଷ୍ଟି ନଦେଇ ଏଥିରୁ ସାମାଜିକ ବ୍ୟବହାର, ଆଚରଣ ଓ କର୍ତ୍ତବ୍ୟ ସମ୍ବନ୍ଧରେ କିଞ୍ଚିତ୍ ସୂଚନା ପାଇପାରିଲେ ମୋର ଶ୍ରମ ସାର୍ଥକ ହେବ ।

ପରିଶେଷରେ ମୋର ଏହି ଉଦ୍ୟମକୁ ସର୍ବଥା ସାଫଲ୍ୟ ମଣ୍ଡିତ କରିବାରେ ପ୍ରେରଣା ଦେଇ ସହାୟକ ହୋଇଥିବାରୁ ଗ୍ରନ୍ଥମନ୍ଦିରର ଅଧିକାରୀ ଶ୍ରୀଯୁକ୍ତ ଅଭିରାମ ମହାପାତ୍ରଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

କୁମାରପୂର୍ଣ୍ଣିମା — ବିନୀତ

୧୪ ଅକ୍ଟୋବର, ୧୯୮୯ — **ଭଗବାନ ପଣ୍ଡା**

# ଭର୍ତ୍ତୃହରି ନୀତିଶତକ

## ଶ୍ରୀ ଜଗନ୍ନାଥାୟ ନମଃ

ଦିକ୍‌କାଳାଦ୍ୟନବଚ୍ଛିନ୍ନାନନ୍ତଚିନ୍ମାତ୍ରମୂର୍ତ୍ତୟେ ।
ସ୍ୱାନୁଭୂତ୍ୟୈକସାରାୟ ନମଃ ଶାନ୍ତାୟ ତେଜସେ ॥୧॥

ଅନ୍ୱୟ—ଦିକ୍‌କାଳାଦ୍ୟବଚ୍ଛିନ୍ନାନନ୍ତଚିନ୍ମାତ୍ରମୂର୍ତ୍ତୟେ (ଦିଗ, କାଳାଦି ସୀମା ରହିତ, ଅସୀମ, ଚିତ୍‌ସ୍ୱରୂପର ମୂର୍ତ୍ତି) ସ୍ୱାନୁଭୂତ୍ୟୈକସାରାୟ (ନିଜ ଅନୁଭୂତିଗମ୍ୟ ଏକମାତ୍ର ସାରଭୂତ) ଶାନ୍ତାୟ ତେଜସେ (ଶାନ୍ତ, ତେଜୋ-ମୟ ବ୍ରହ୍ମଙ୍କୁ) ନମଃ (ନମସ୍କାର କରୁଛି) ।

ଅର୍ଥ—ସମସ୍ତ ଦିଗ ଓ କାଳର ସୀମା ମଧ୍ୟରେ ଯେ ଆବଦ୍ଧ ନୁହେଁ, ଅସୀମ, ଚିତ୍‌ସ୍ୱରୂପର ମୂର୍ତ୍ତିମନ୍ତ ପ୍ରତୀକ ଏବଂ ନିଜର ଅନୁଭୂତିଦ୍ୱାରା ଅନୁଭବ ଯୋଗ୍ୟ, ଶାନ୍ତ ଓ ସମସ୍ତ ଜ୍ଞାନର ସାରଭୂତ, ସେହି ତେଜୋମୟ ବ୍ରହ୍ମଙ୍କୁ ମୁଁ ନମସ୍କାର କରୁଛି ।

ବୋଦ୍ଧାରୋ ମତ୍ସରଗ୍ରସ୍ତାଃ ପ୍ରଭବଃ ସ୍ମୟଦୂଷିତାଃ ।
ଅବୋଧୋପହତାଶ୍ଚାନ୍ୟେ ଜୀର୍ଣ୍ଣମଙ୍ଗେ ସୁଭାଷିତମ୍ ॥୨॥

ଅନ୍ୱୟ—ବୋଦ୍ଧାରଃ (ପଣ୍ଡିତମାନେ) ମତ୍ସରଗ୍ରସ୍ତାଃ (ଈର୍ଷ୍ୟାପରାୟଣ), ପ୍ରଭବଃ (ରାଜା ବା ଶାସକମାନେ) ସ୍ମୟଦୂଷିତାଃ (ଅହଙ୍କାରପରାୟଣ, କାମକ୍ରୋଧ ଲୋଭାଦିର ବଶବର୍ତ୍ତୀ) ଅନ୍ୟେ ଚ (ଅନ୍ୟମାନେ ମଧ୍ୟ) ଅବୋଧୋପହତାଃ (ଅଜ୍ଞାନତା ଓ ଦାରିଦ୍ର୍ୟ ଦ୍ୱାରା ଅଭିଭୂତ) ସୁଭାଷିତଂ

(ଉତ୍ତମ, ବାକ୍ୟ, ରଚନା) ଅଙ୍ଗେ (ଦେହ ମଧ୍ୟରେ, ମହାନ୍ତ ଲୋକଠାରେ ହିଁ) ଜୀର୍ଣ୍ଣମ୍ (ଲୀନହୋଇଯାଏ) ।

ଅର୍ଥ--ପଣ୍ଡିତମାନେ ବିଦ୍ୟା ଅଭିମାନରେ ଈର୍ଷ୍ୟାପରାୟଣ ହେବାର ଦେଖାଯାନ୍ତି । ରାଜା ବା ଶାସକ ଓ ଧନୀଲୋକେ ଗର୍ବ ଓ ଲୋଭବଶତଃ ଗୁଣୀ ଲୋକଙ୍କୁ ଆଦର କରୁନାହାନ୍ତି । ଅନ୍ୟ ସାଧାରଣ ଲୋକେ ଅଜ୍ଞତା ତଥା ଦାରିଦ୍ର୍ୟଦ୍ୱାରା ଅଭିଭୂତ । ତେଣୁ ସୁଭକ୍ତିତଗୁଡ଼ିକ ନିଜ ଶରୀର ମଧ୍ୟରେ ହିଁ ଲୀନହୋଇଯାଉଛି । ସଂସାରରେ ଯଥାର୍ଥ ଭାବେ ତାହା ପ୍ରକାଶ ପାଇପାରୁ ନାହିଁ ।

ଅଜ୍ଞଃ ସୁଖମାରାଧ୍ୟଃ ସୁଖତରମାରାଧ୍ୟତେ ବିଶେଷଜ୍ଞଃ ।
ଜ୍ଞାନଲବଦୁର୍ବିଦଗ୍ଧଂ ବ୍ରହ୍ମାପି ତଂ ନରଂ ନ ରଞ୍ଜୟତି ॥୩॥

ଅନ୍ୱୟ—ଅଜ୍ଞଃ (ମୂର୍ଖ) ସୁଖଂ (ସହଜରେ, ଅନାୟାସରେ) ଆରାଧ୍ୟଃ (ଆୟତ୍ତ ବା ବଶୀଭୂତ) ବିଶେଷଜ୍ଞଃ (ଯେ ଭଲମନ୍ଦ ଜାଣେ, ପଣ୍ଡିତ) ସୁଖତରଂ (ଅଧିକ ସହଜରେ) ଆରାଧ୍ୟତେ (ଆୟତ୍ତ ବା ଅନୁରକ୍ତ) ଜ୍ଞାନ-ଲବଦୁର୍ବିଦଗ୍ଧଂ (ଅଳ୍ପଜ୍ଞ, ଦରପାଠୁଆ) ନରଂ ତଂ (ଲୋକକୁ) ବ୍ରହ୍ମା ଅପି (ବ୍ରହ୍ମା ମଧ୍ୟ) ନ ରଞ୍ଜୟତି (ବଶୀଭୂତ, ଅନୁରକ୍ତ କରିପାରନ୍ତି ନାହିଁ) ।

ଅର୍ଥ—ମୂର୍ଖ ଲୋକକୁ ସହଜରେ ଓ ଜ୍ଞାନୀ ଲୋକକୁ ଅତି ସହଜରେ ସେବା, ପ୍ରସନ୍ନ ବା ବଶୀଭୂତ କରାଯାଇଥାଏ । କିନ୍ତୁ ଯେ ଅଜ୍ଞ ନୁହନ୍ତି କି ବିଜ୍ଞ ନୁହନ୍ତି, ସେପରି ପଣ୍ଡିତମ୍ମନ୍ୟ ଦରପାଠୁଆଙ୍କୁ ବ୍ରହ୍ମା ମଧ୍ୟ ଆୟତ୍ତ କରିପାରନ୍ତି ନାହିଁ ।

ପ୍ରସହ୍ୟ ମଣିମୁଦ୍ଧରେନ୍ମକରବକ୍ତ୍ରଦଂଷ୍ଟ୍ରାନ୍ତରାତ୍
ସମୁଦ୍ରମପି ସନ୍ତରେତ୍ ପ୍ରଚଳଦୁର୍ମିମାଳାକୁଳମ୍ ।
ଭୁଜଙ୍ଗମପି କୋପିତଂ ଶିରସି ପୁଷ୍ପବଦ୍ଧାରୟେ-
ନ୍ନ ତୁ ପ୍ରତିନିବିଷ୍ଟମୂର୍ଖଜନଚିତ୍ତମାରାଧୟେତ୍ ॥୪॥

ଅନ୍ୱୟ—ମକରବକ୍ତ୍ରଦଂଷ୍ଟ୍ରାନ୍ତରାତ୍ (ମଗରର ଦାନ୍ତସନ୍ଧିରୁ) ପ୍ରସହ୍ୟ (ବଳପୂର୍ବକ) ମଣିମ୍ ଉଦ୍ଧରେତ୍ (ମଣି ଉଦ୍ଧାର କରାଯାଇପାରେ) ପ୍ରଚଲତ୍ ଊର୍ମିମାଳାକୁଳଂ ( ଚଞ୍ଚଳ ତରଙ୍ଗମାଳାରେ ବ୍ୟାକୁଳ ) ସମୁଦ୍ରମ୍ ଅପି (ସାଗରକୁ ମଧ୍ୟ) ସନ୍ତରେତ୍ (ପାରହୋଇ ହୁଏ) କୋପିତଂ (କ୍ରୁଦ୍ଧ) ଭୁଜଙ୍ଗମ୍ ଅପି (ସାପକୁ ମଧ୍ୟ) ପୁଷ୍ପବତ୍ (ଫୁଲ ପରି) ଶିରସି (ମସ୍ତକରେ) ଧାରୟେତ୍ (ଧାରଣ କରାଯାଇପାରେ) ତୁ (କିନ୍ତୁ) ପ୍ରତିନିବିଷ୍ଟମୂର୍ଖଜନଚିତ୍ତଂ (ଅବୁଝା ମୂର୍ଖଲୋକର ମନକୁ) ନ ଆରାଧୟେତ୍ (ବୁଝାଇପାରେ ନାହିଁ, ଆୟତ୍ତ କରିପାରେ ନାହିଁ) ।

ଅର୍ଥ—ଲୋକ ଚେଷ୍ଟାକଲେ ମଗର ପାଟିରୁ ବଳ ପୂର୍ବକ ମଣି ଆଣିପାରେ, ଚଞ୍ଚଳ ତରଙ୍ଗମାଳା ଦ୍ୱାରା ବିକ୍ଷୋଭିତ ସାଗରକୁ ପାର ହୋଇପାରେ ଓ କ୍ରୁଦ୍ଧ ସର୍ପକୁ ମଧ୍ୟ ଫୁଲ ପରି ମସ୍ତକରେ ଧାରଣ କରିପାରେ । କିନ୍ତୁ ଯେତେ ଚେଷ୍ଟା କଲେବି କେହି ଅବୁଝା ମୂର୍ଖର ମନକୁ ଆୟତ୍ତ କରିପାରେ ନାହିଁ ।

ଲଭେତ ସିକତାସୁ ତୈଳମପି ଯତ୍ନତଃ ପୀଡ଼ୟନ୍
ପିବେଚ୍ଚ ମୃଗତୃଷ୍ଣିକାସୁ ସଲିଳଂ ପିପାସାର୍ଦ୍ଦିତଃ ।
କଦାଚିଦପି ପର୍ଯ୍ୟଟନ୍ଶଶବିଷାଣମାସାଦୟେ-
ନ୍ନ ତୁ ପ୍ରତିନିବିଷ୍ଟମୂର୍ଖଜନଚିତ୍ତମାରାଧୟେତ୍ ॥୫॥

ଅନ୍ୱୟ—ଯତ୍ନତଃ (ଚେଷ୍ଟାକଲେ) ପୀଡ଼ୟନ୍ (ଚିପୁଡ଼ି) ସିକତାସୁ (ବାଲିରୁ) ତୈଳମ୍ ଅପି ଲଭେତ (ତେଲ ବାହାର କରାଯାଇପାରେ) ପିପାସାର୍ଦ୍ଦିତଃ (ତୃଷାରେ ଆକୁଳ ବ୍ୟକ୍ତି) ମୃଗତୃଷ୍ଣିକାସୁ (ମୃଗତୃଷ୍ଣାରୁ) ସଲିଳଂ ଚ (ଜଳ ମଧ୍ୟ) ପିବେତ୍ (ପିଇପାରେ) କଦାଚିତ୍ (କ୍ୱଚିତ୍) ପର୍ଯ୍ୟଟନ (ବୁଲୁବୁଲୁ) ଶଶବିଷାଣମ୍ ଅପି (ଠେକୁଆର ଶିଙ୍ଗ ମଧ୍ୟ) ଆସାଦୟେତ୍ (ପାଇପାରେ) ତୁ ପ୍ରତିନିବିଷ୍ଟମୂର୍ଖଜନଚିତ୍ତଂ (କିନ୍ତୁ ଅବୁଝା ମୂର୍ଖର ମନକୁ) ନ ଆରାଧୟେତ୍ (ଆୟତ୍ତ କରିପାରେ ନାହିଁ) ।

ଅର୍ଥ—ଯତ୍ନରେ ଚିପୁଡ଼ିଲେ (ପେଡ଼ିଲେ) ବାଲିରୁ ବି ତେଲ ମିଳିପାରେ । ତୃଷାର୍ତ୍ତ ବ୍ୟକ୍ତି ମୃଗ ତୃଷ୍ଣାରୁ ହୁଏତ ଜଳ ପାଇପାରେ । କେବେହେଲେ

ବୁଲୁବୁଲ୍ସ ଠେକୁଆର୍ ଶିଙ୍ଗ ମିଳିଯାଇପାରେ । ଏସବୁ ଅସମ୍ଭବ କଥା ସମ୍ଭବ ହେବାର ସମ୍ଭାବନା ଥିଲେ ମଧ୍ୟ, ଯେତେ ଚେଷ୍ଟା କଲେବି ମୂର୍ଖଲୋକର ମନକୁ ଆସ୍ତୃତ୍ତି କରିବା ସମ୍ଭବ ହୁଏ ନାହିଁ ।

ବ୍ୟାଳଂ ବାଳମୃଣାଳତନ୍ତୁଭିରସୌ ରୋଦ୍ଧୁଂ ସମୁଜ୍ଜୃମ୍ଭତେ
ଛେତ୍ତୁଂ ବଜ୍ରମଣୀଂଶ୍ଛିରୀଷକୁସୁମପ୍ରାନ୍ତେନ ସନ୍ନହ୍ୟତେ ।
ମାଧୁର୍ଯ୍ୟଂ ମଧୁବିନ୍ଦୁନା ରଚୟିତୁଂ କ୍ଷାରାମ୍ବୁଧେରୀହତେ
ନେତୁଂ ବାଞ୍ଛତି ଯଃ ଖଳାନ୍ ପଥି ସତାଂ ସୂକ୍ତୈଃ
ସୁଧାସ୍ୟନ୍ଦିଭିଃ ॥୬॥

ଅନ୍ୱୟ—ଯଃ (ଯେ) ସୁଧାସ୍ୟନ୍ଦିଭିଃ (ଅମୃତସ୍ରାବୀ) ସୂକ୍ତୈଃ (ଉତ୍ତମ ବାକ୍ୟ, ସୁଭାଷିତ ଦ୍ୱାରା) ଖଳାନ୍ (ଦୁଷ୍ଟ, ମୂର୍ଖମାନଙ୍କୁ) ସତାଂ ପଥି ନେତୁଂ (ସାଧୁ ମାର୍ଗରେ ପରିଚାଳିତ କରିବାକୁ) ବାଞ୍ଛତି (ଇଚ୍ଛା କରେ) ଅସୌ (ସେ) ବ୍ୟାଳଂ (ହାତୀକୁ) ବାଳମୃଣାଳତନ୍ତୁଭିଃ (କୋମଳ ପଦ୍ମନାଡ଼ର ତନ୍ତୁଦ୍ୱାରା) ରୋଦ୍ଧୁଂ (ବାନ୍ଧିବାକୁ) ସମୁଜ୍ଜୃମ୍ଭତେ (ଚେଷ୍ଟାକରେ) ଶିରୀଷକୁସୁମପ୍ରାନ୍ତେନ (ଶିରୀଷଫୁଲଧାରରେ) ବଜ୍ରମଣିଂ (ହୀରାକୁ) ଛେତ୍ତୁଂ (କାଟିବାକୁ) ସନ୍ନହ୍ୟତେ (ଉଦ୍ୟତ ହୁଏ) ମଧୁବିନ୍ଦୁନା (ବିନ୍ଦୁଏ, ଟୋପାଏ ମହୁଦ୍ୱାରା) କ୍ଷାରାମ୍ବୁଧେଃ (କ୍ଷାର ସମୁଦ୍ରର) ମାଧୁର୍ଯ୍ୟଂ (ମଧୁରତା) ଈହତେ (ଚେଷ୍ଟାକରେ) ।

ଅର୍ଥ—ମଧୁର ଓ ହିତକର ବାକ୍ୟ କହି ଯେ ଖଳମାନଙ୍କୁ ସତ୍ପଥରେ ପରିଚାଳିତ କରିବାକୁ ଇଚ୍ଛାକରେ, ସେ ପଦ୍ମନାଡ଼ର ସୂତାଦ୍ୱାରା ହାତୀ ବାନ୍ଧିବାକୁ ଯତ୍ନ କରେ, ଶିରୀଷ ଫୁଲ ଧାରରେ ହୀରା କାଟିବାକୁ ଉଦ୍ୟତ ହୁଏ ଅଥବା ଟୋପାଏ ମହୁଦ୍ୱାରା ସମୁଦ୍ରର ଲୁଣିଆ ପାଣିକୁ ମିଠା କରିବା ପାଇଁ ଚେଷ୍ଟା କରେ ବୋଲି କୁହାଯିବ । ଏଥିରୁ ଜଣାଯାଏ ଯେତେ ଚେଷ୍ଟା କଲେ ମଧ୍ୟ ଦୁଷ୍ଟ, ଖଳ ବ୍ୟକ୍ତିକୁ ସତ୍ପଥରେ ପରିଚାଳିତ କରିବା ସମ୍ଭବ ନୁହେଁ ।

ସ୍ୱାୟତ୍ତମେକାନ୍ତଗୁଣଂ ବିଧାତ୍ରା
ବିନିର୍ମିତଂ ଛାଦନମଜ୍ଞତାୟାଃ ।

ବିଶେଷତଃ ସର୍ବବିଦାଂ ସମାଜେ
ବିଭୂଷଣଂମୌନମପଣ୍ଡିତାନାମ୍ ॥୭॥

ଅନ୍ୱୟ—ବିଧାତା (ବ୍ରହ୍ମାଙ୍କଦ୍ୱାରା) ଅଜ୍ଞତାୟାଃ (ମୂର୍ଖତାର) ଛାଦନଂ (ଘୋଡ଼ାଇବା) ଏକାନ୍ତଗୁଣଂ (ଏକମାତ୍ର ଉପାୟ) ମୌନଂ (ନୀରବତା) ସ୍ୱାୟତ୍ତଂ (ସ୍ୱାଧୀନ) ବିନିର୍ମିତଂ (ରଚିତ ହୋଇଛି) ବିଶେଷତଃ (ବିଶେଷ କରି) ସର୍ବବିଦାଂ ସମାଜେ (ପଣ୍ଡିତମାନଙ୍କ ସଭାରେ) ମୌନଂ (ନୀରବତା) ବିଭୂଷଣମ୍ (ଭୂଷଣ ହୁଏ) ।

ଅର୍ଥ—ବିଧାତା ଅଜ୍ଞତାକୁ ଘୋଡ଼ାଇବା ପାଇଁ ଏକମାତ୍ର ଉପାୟ ସ୍ୱରୂପ ମୌନ ଗୁଣକୁ ଅଜ୍ଞମାନଙ୍କର ଅଧୀନ କରିଛନ୍ତି । ବିଶେଷତଃ ପଣ୍ଡିତ ସଭାରେ ମୌନଗୁଣ ମୂର୍ଖମାନଙ୍କର ଭୂଷଣ ହୋଇଥାଏ ।

ଯଦା କିଞ୍ଚିଦ୍‌ଜ୍ଞୋହଂ ଦ୍ୱିପ ଇବ ମଦାନ୍ଧଃ ସମଭବଂ
ତଦା ସର୍ବଜ୍ଞୋଽସ୍ମୀତ୍ୟଭବଦବଲିପ୍ତଂ ମମ ମନଃ ।
ଯଦା କିଞ୍ଚିତ୍‌କିଞ୍ଚିଦ୍‌ବୁଧଜନସକାଶାଦବଗତଂ
ତଦା ମୂର୍ଖୋଽସ୍ମୀତି ଜ୍ୱର ଇବ ମଦୋ ମେ ବ୍ୟପଗତଃ ॥୮॥

ଅନ୍ୱୟ— ଯଦା (ଯେତେବେଳେ) କିଞ୍ଚିଦ୍‌ଜ୍ଞଃ ଅହଂ (ମୁଁ କିଛି ଜାଣିଲି) ଦ୍ୱିପ ଇବ (ହାତୀ ପରି) ମଦାନ୍ଧଃ ସମଭବଂ (ଗର୍ବୋନ୍ମତ୍ତ ହେଲି) ତଦା ସର୍ବଜ୍ଞଃ ଅସ୍ମି ଇତି (ସେତେବେଳେ ମୁଁ ସର୍ବଜ୍ଞ ହେଲି ବୋଲି) ମମ ମନଃ (ମୋର ମନ) ଅବଲିପ୍ତମ୍ ଅଭବତ୍ (ଗର୍ବିତ ହେଲା) ଯଦା (ଯେବେ) ବୁଧଜନ ସକାଶାତ୍ (ପଣ୍ଡିତମାନଙ୍କଠାରୁ) କିଞ୍ଚିତ୍ କିଞ୍ଚିତ୍ ଅବଗତଂ (କିଛି କିଛି ବୁଝିଲି) ତଦା (ସେତେବେଳେ) ମୂର୍ଖଃ ଅସ୍ମି ଇତି (ମୂର୍ଖ ଅଟେ ବୋଲି) ମେ ମଦଃ (ମୋର ଅଭିମାନ) ଜ୍ୱରଃ ଇବ (ଜ୍ୱର ବେଗ ପରି) ବ୍ୟପଗତଃ (ଧୀରେ ଧୀରେ ଦୂର ହେଲା) ।

ଅର୍ଥ—ମୁଁ ଯେତେବେଳେ ଅଳ୍ପ କିଛି ଜାଣିଲି ସେତେବେଳେ ମଦୋନ୍ମତ୍ତ ହାତୀ ପରି ଗର୍ବରେ ଅନ୍ଧ ହୋଇପଡ଼ିଲି ଏବଂ ମୁଁ ଜଣେ ସର୍ବଜ୍ଞ

ବୋଲି ଗର୍ବ ପ୍ରକାଶ କଲି । କିନ୍ତୁ ଯେତେବେଳେ ପଣ୍ଡିତମାନଙ୍କ ସଂସର୍ଗରେ ଆସି କିଛି କିଛି ବୁଝିଲି, ସେତେବେଳେ ମୋ'ପରି ମୂର୍ଖ ଆଉ କେହି ନାହିଁ ବୋଲି ମୋର ଧାରଣା ହେଲା । ତେଣୁ ମୋର ମନର ଅହଙ୍କାର ଜ୍ୱରବେଗ ପରି ଧୀରେ ଧୀରେ ଦୂର ହୋଇଗଲା ।

କୃମିକୁଳଚିତଂ ଲାଲାକ୍ଲିନ୍ନଂ ବିଗର୍ହି ଜୁଗୁପ୍‌ସିତଂ
ନିରୁପମରସଂ ପ୍ରୀତ୍ୟା ଖାଦନ୍ନରାସ୍ଥି ନିରାମିଷମ୍ ।
ସୁରପତିମପି ଶ୍ୱା ପାର୍ଶ୍ୱସ୍ଥଂ ବିଲୋକ୍ୟ ନ ଶଙ୍କତେ
ନହି ଗଣୟତି କ୍ଷୁଦ୍ରୋ ଜନ୍ତୁଃ ପରିଗ୍ରହଫଲ୍‌ଗୁତାମ୍ ॥୯॥

ଅନ୍ୱୟ—ଶ୍ୱା (କୁକୁର) କୃମିକୁଳଚିତଂ (ପୋକପଡ଼ିଥିବା) ଲାଲାକ୍ଲିନ୍ନଂ (ଲାଳଯୁକ୍ତ) ବିଗର୍ହି (ଅପବିତ୍ର) ଜୁଗୁପ୍‌ସିତଂ (ଅତି ଦୁର୍ଗନ୍ଧ) ନିରୁପମରସଂ (ନୀରସ) ନିରାମିଷଂ (ମାଂସହୀନ) ନରାସ୍ଥି (ମଣିଷହାଡ଼) ପ୍ରୀତ୍ୟା (ଆନନ୍ଦରେ) ଖାଦନ୍ (ଖାଉଥିବାବେଳେ) ପାର୍ଶ୍ୱସ୍ଥଂ (ପାଖରେ) ସୁରପତିଂ (ଇନ୍ଦ୍ରଙ୍କୁ) ବିଲୋକ୍ୟ ଅପି (ଦେଖି ମଧ୍ୟ) ନ ଶଙ୍କତେ (ଭୟ କରେନାହିଁ) ହି (କାରଣ) କ୍ଷୁଦ୍ରଃ ଜନ୍ତୁଃ (କ୍ଷୁଦ୍ରଜୀବ) ପରିଗ୍ରହ ଫଲ୍‌ଗୁତାଂ (ପ୍ରାପ୍ତ ଦ୍ରବ୍ୟକୁ ଶ୍ରେଷ୍ଠବୋଲି) ନ ଗଣୟତି (ଗଣନା କରେନାହିଁ) ।

ଅର୍ଥ—କୁକୁର ପୋକପଡ଼ିଥିବା, ଲାଳଯୁକ୍ତ, ଅପବିତ୍ର, ଅତି ଦୁର୍ଗନ୍ଧ, ନୀରସ, ମାଂସହୀନ ମଣିଷ ହାଡ଼ ଆନନ୍ଦରେ ଖାଉଥିବାବେଳେ ପାଖରେ ଇନ୍ଦ୍ରଙ୍କୁ ଦେଖିଲେ ବି ଭୟକରେନାହିଁ । କାରଣ, କ୍ଷୁଦ୍ର ଜୀବ ଅନାୟାସରେ ପାଇଥିବା ଦ୍ରବ୍ୟକୁ ଶ୍ରେଷ୍ଠବୋଲି ଗଣନା କରେନାହିଁ ।

ଶିରଃ ଶାର୍ବଂ ସ୍ୱର୍ଗାତ୍ପତତି ଶିରସସ୍ତତ୍‌କ୍ଷିତିଧରଂ
ମହୀଧ୍ରାଦୁତ୍ତୁଙ୍ଗାଦବନିମବନେଶ୍ଚାପି ଜଲଧିମ୍ ।
ଅଧୋ ଗଙ୍ଗା ସେୟଂ ପଦମୁପଗତା ସ୍ତୋକମଥ ବା
ବିବେକଭ୍ରଷ୍ଟାନାଂ ଭବତି ବିନିପାତଃ ଶତମୁଖଃ ॥ ୧୦ ॥

ଅନ୍ୱୟ—ଇୟଂ ଗଙ୍ଗା (ଏହି ଗଙ୍ଗା) ସ୍ୱର୍ଗାତ୍ (ସ୍ୱର୍ଗରୁ) ଶାର୍ବଂ ଶିରଃ (ଶିବମସ୍ତକ) ଶିରସଃ ତତ୍ କ୍ଷିତିଧରଂ (ଶିବମସ୍ତକରୁ ପର୍ବତ ଉପରେ) ଉତ୍ତୁଙ୍ଗାତ୍ ମହୀଧ୍ରାତ୍ (ତୁଙ୍ଗ ଶିଖରରୁ) ଅବନିଂ (ପୃଥିବୀରେ) ଅବନେଃ ଚ ଅପି (ପୃଥିବୀରୁ ମଧ୍ୟ) ଅଧଃ ପଦମ୍ ଉପଗତା (କ୍ରମଶଃ ନିମ୍ନଗତି କରି) ଜଲଧିଂ ପତତି (ସମୁଦ୍ରରେ ପଡ଼ୁଛି) । ଅଥବା ସ୍ତୋକଂ (ଅତି ଅଳ୍ପ) ବିବେକଭ୍ରଷ୍ଟାନାଂ (ବିବେକ ଭ୍ରଷ୍ଟ ହୋଇଥିବା ଲୋକଙ୍କର) ବିନିପାତଃ (ଅଧଃପତନ) ଶତମୁଖଃ (ବହୁଧା) ଭବତି (ହୁଏ) ।

ଅର୍ଥ—ଜଗତ୍‌ପାବନୀ ଏହି ଗଙ୍ଗା ପ୍ରଥମେ ସ୍ୱର୍ଗରୁ ଶିବଙ୍କ ମସ୍ତକରେ ପଡ଼ିଲେ । ତା'ପରେ ଶିବ-ମସ୍ତକରୁ ହିମାଳୟରେ, ତୁଙ୍ଗ ହିମାଳୟ ଶିଖରରୁ ପୃଥିବୀ ପୃଷ୍ଠରେ ଏବଂ କ୍ରମଶଃ ନିମ୍ନକୁ ଗତିକରି ଶେଷରେ ଯାଇ ସମୁଦ୍ରରେ ପଡ଼ିଲେ । ସେହିପରି ଅଳ୍ପମାତ୍ରାରେ ବି ବିବେକ ଭ୍ରଷ୍ଟ ହେଲେ ଲୋକର ବହୁଧା ଅଧଃପତନ ଘଟେ ।

ଶକ୍ୟୋ ବାରୟିତୁଂ ଜଲେନ ହୁତଭୁକ୍ ଛତ୍ରେଣ ସୂର୍ଯ୍ୟାତପୋ
ନାଗେନ୍ଦ୍ରୋ ନିଶିତାଙ୍କୁଶେନ ସମଦୋ ଦଣ୍ଡେନ ଗୋଗର୍ଦ୍ଦଭୌ ।
ବ୍ୟାଧିର୍ଭେଷଜସଙ୍ଗ୍ରହୈଶ୍ଚ ବିବିଧୈର୍ମନ୍ତ୍ରପ୍ରୟୋଗୈର୍ବିଷଂ
ସର୍ବସ୍ୟୌଷଧମସ୍ତି ଶାସ୍ତ୍ରବିହିତଂ ମୂର୍ଖସ୍ୟ ନାସ୍ତ୍ୟୌଷଧମ୍ ॥ ୧୧ ॥

ଅନ୍ୱୟ—ଜଲେନ (ଜଳଦ୍ୱାରା) ହୁତଭୁକ୍ (ଅଗ୍ନି) ବାରୟିତୁଂ ଶକ୍ୟଃ (ନିବାରଣ କରାଯାଇପାରେ) ଛତ୍ରେଣ (ଛତାଦ୍ୱାରା) ସୂର୍ଯ୍ୟାତପଃ (ଖରା) ନିଶିତାଙ୍କୁଶେନ (ତୀକ୍ଷ୍ଣ ଅଙ୍କୁଶ ଦ୍ୱାରା) ସମଦଃ (ଉନ୍ମତ୍ତ) ନାଗେନ୍ଦ୍ରଃ (ହସ୍ତୀ) ଦଣ୍ଡେନ (ବାଡ଼ିଦ୍ୱାରା) ଗୋଗର୍ଦ୍ଦଭୌ (ଗୋରୁ ଓ ଗଧ) ଭେଷଜସଙ୍ଗ୍ରହୈଃ (ସଂଗୃହୀତ ଔଷଧ ଦ୍ୱାରା) ବ୍ୟାଧିଃ (ରୋଗ) ବିବିଧୈଃ ମନ୍ତ୍ରପ୍ରୟୋଗୈଃ (ବିବିଧ ପ୍ରକାର ମନ୍ତ୍ର ପ୍ରୟୋଗ ଦ୍ୱାରା) ବିଷଂ (ବିଭିନ୍ନ ବିଷ) ସର୍ବସ୍ୟ (ସମସ୍ତଙ୍କର) ଶାସ୍ତ୍ରବିହିତଂ (ଶାସ୍ତ୍ରୀୟ) ଔଷଧମ୍ ଅସ୍ତି (ଔଷଧ ଅଛି) । ମୂର୍ଖସ୍ୟ (ମୂର୍ଖର) ଔଷଧଂ ନାସ୍ତି (କୌଣସି ଔଷଧ ନାହିଁ) ।

ଅର୍ଥ—ପାଣିଦ୍ୱାରା ଅଗ୍ନି, ଛତାରେ ଖରା, ମୁନିଆଁ ଅଙ୍କୁଶରେ ମତୁଆଲା ହାତୀ, ଠେଙ୍ଗାରେ ଗୋରୁ ଗଧ ପ୍ରଭୃତି, ସଂଗ୍ରହ କରାଯାଇଥିବା ଔଷଧରେ ରୋଗ ଓ ବିବିଧ ମନ୍ତ୍ର ପ୍ରୟୋଗ ଦ୍ୱାରା ବିଷଜନିତ ଆକୁ-ଆୟତ୍ତ କରାଯାଇପାରେ। ସମସ୍ତଙ୍କ ପାଇଁ ଶାସ୍ତ୍ରବିହିତ ଔଷଧ ଥିଲେ ମଧ୍ୟ ମୂର୍ଖଲୋକଙ୍କୁ ଆୟତ୍ତ କରିବା ପାଇଁ କୌଣସି ଉପାୟ ନାହିଁ।

ସାହିତ୍ୟସଙ୍ଗୀତକଳାବିହୀନଃ
 ସାକ୍ଷାତ୍ପଶୁଃ ପୁଚ୍ଛବିଷାଣହୀନଃ
ତୃଣଂ ନ ଖାଦନ୍ନପି ଜୀବମାନ
 ସ୍ତଦ୍ଭାଗଧେୟଂ ପରମଂପଶୂନାମ୍ ॥ ୧୨ ॥

ଅନ୍ୱୟ—ସାହିତ୍ୟ ସଙ୍ଗୀତ କଳାବିହୀନଃ (ସାହିତ୍ୟ, ସଙ୍ଗୀତ, କଳା ବିଦ୍ୟାରେ ଅଜ୍ଞ ବ୍ୟକ୍ତି) ସାକ୍ଷାତ୍ ପୁଚ୍ଛବିଷାଣହୀନଃ ପଶୁଃ (ସାକ୍ଷାତ୍ ପୁଚ୍ଛ ଓ ଶିଙ୍ଗ ନଥିବା ପଶୁ ସହିତ ତୁଳନୀୟ) ତୃଣଂ ନ ଖାଦନ୍ ଅପି (ଘାସ ନଖାଇ ମଧ୍ୟ) ଜୀବମାନଃ (ସେ ଜୀବନ ଧାରଣ କରୁଛି) ତତ୍ (ତାହା) ପଶୂନାଂ (ପଶୁମାନଙ୍କ ପକ୍ଷରେ) ପରମଂ ଭାଗଧେୟଂ (ପରମ ସୌଭାଗ୍ୟ)।

ଅର୍ଥ—ସାହିତ୍ୟ ଓ ସଙ୍ଗୀତକଳା ବିଷୟରେ ଅନଭିଜ୍ଞ ବ୍ୟକ୍ତି, ଲାଂଗୁଳ ଓ ଶିଙ୍ଗ ନଥିବା ସାକ୍ଷାତ୍ ପଶୁ ବୋଲି ବିବେଚିତ ହୁଏ। ସେ ଘାସ ନଖାଇ ଜୀବନ ଧାରଣ କରେ-ତାହାହିଁ ପଶୁମାନଙ୍କର ପରମ ସୌଭାଗ୍ୟ। ସାହିତ୍ୟ ଓ ସଙ୍ଗୀତ ଜାଣି ନଥିବା ବ୍ୟକ୍ତି ତୃଣଭୋଜୀ ହୋଇ ନଥିବା ଏକ ପଶୁରୂପେ ବିବେଚିତ।

ଯେଷାଂ ନ ବିଦ୍ୟା ନ ତପୋ ନ ଦାନଂ
 ଜ୍ଞାନଂ ନ ଶୀଳଂ ନ ଗୁଣୋ ନ ଧର୍ମଃ।
ତେ ମର୍ତ୍ତ୍ୟଲୋକେ ଭୁବି ଭାରଭୂତାଃ
 ମନୁଷ୍ୟରୂପେଣ ମୃଗାଶ୍ଚରନ୍ତି ॥ ୧୩ ॥

ଅନ୍ୱୟ—ଯେଷାଂ (ଯେଉଁମାନଙ୍କର) ନ ବିଦ୍ୟା (ବିଦ୍ୟା ନାହିଁ) ନ ତପଃ (ତପସ୍ୟା ନାହିଁ) ନ ଦାନଂ (ଦାନ ଦେବା ଇଚ୍ଛା ନାହିଁ) ନ ଜ୍ଞାନଂ ନ ଶୀଳଂ (ଜ୍ଞାନ ନାହିଁ କି ସୁସ୍ୱଭାବ ନାହିଁ) ନ ଗୁଣଃ ନ ଧର୍ମଃ (ସୁଗୁଣ ନାହିଁ କି ଧର୍ମ ନାହିଁ) ତେ (ସେମାନେ) ମର୍ତ୍ତ୍ୟଲୋକେ (ମର୍ତ୍ତ୍ୟରେ) ଭୁବି (ପୃଥିବୀରେ) ଭାରଭୂତାଃ ମୃଗାଃ (ଭାରଭୂତ ପଶୁ ରୂପେ) ମନୁଷ୍ୟ ରୂପେଣ (ମନୁଷ୍ୟ ରୂପରେ) ଚରନ୍ତି (ବିଚରଣ କରନ୍ତି) ।

ଅର୍ଥ—ଯେଉଁ ଲୋକମାନଙ୍କର ବିଦ୍ୟା, ତପସ୍ୟା, ଜ୍ଞାନ, ଦାନ, ଧର୍ମ, ଉତ୍ତମ ଚରିତ୍ର ଓ ଗୁଣ ନାହିଁ, ସେମାନେ ଏହି ମରଣଶୀଳ ପୃଥିବୀରେ ଭାରଭୂତ ପଶୁମାନଙ୍କ ପରି ମନୁଷ୍ୟ ରୂପରେ ବିଚରଣ କରୁଛନ୍ତି । କାରଣ, ମାନବିକ ଧର୍ମହୀନ ମଣିଷ ପଶୁ ବୋଲି ବିବେଚିତ ହୁଏ ।

ବରଂ ପର୍ବତଦୁର୍ଗେଷୁ ଭ୍ରାନ୍ତଂ ବନଚରୈଃ ସହ ।
ନ ମୂର୍ଖଜନସମ୍ପର୍କଃ ସୁରେନ୍ଦ୍ରଭବନେଷ୍ୱପି ॥ ୧୪ ॥

ଅନ୍ୱୟ—ପର୍ବତ ଦୁର୍ଗେଷୁ (ଦୁର୍ଗମ ପାର୍ବତ୍ୟାଞ୍ଚଳରେ) ବନଚରୈଃ ସହ (ବଣୁଆ ହିଂସ୍ର ଜୀବଜନ୍ତୁଙ୍କ ସହିତ) ଭ୍ରାନ୍ତଂ ବରଂ (ଭ୍ରମଣ କରିବା ଶ୍ରେୟସ୍କର) ସୁରେନ୍ଦ୍ରଭବନେଷୁ ଅପି (ଇନ୍ଦ୍ରଭୁବନରେ ମଧ୍ୟ) ମୂର୍ଖଜନସମ୍ପର୍କଃ (ମୂର୍ଖଲୋକମାନଙ୍କ ଗହଣରେ ରହିବା) ନ (ଶ୍ରେୟସ୍କର ନୁହେଁ) ।

ଅର୍ଥ—ପର୍ବତର ଦୁର୍ଗମ ସ୍ଥାନରେ ବଣୁଆ ହିଂସ୍ର ଜୀବଜନ୍ତୁଙ୍କ ସହିତ ଭ୍ରମଣ କରିବା ଶ୍ରେୟସ୍କର; କିନ୍ତୁ ଇନ୍ଦ୍ରଭୁବନରେ ରହି ମୂର୍ଖମାନଙ୍କ ସହିତ କାଳଯାପନ କରିବା ଆଦୌ ଶ୍ରେୟସ୍କର ନୁହେଁ ।

ଶାସ୍ତ୍ରୋପସ୍କୃତ ଶବ୍ଦ ସୁନ୍ଦରଗିରଃ ଶିଷ୍ୟପ୍ରଦେୟାଗମାଃ
ବିଖ୍ୟାତାଃ କବୟୋ ବସନ୍ତି ବିଷୟେ ଯସ୍ୟ ପ୍ରଭୋର୍ନିର୍ଦ୍ଧନାଃ ।
ତଜ୍ଜାଡ୍ୟଂ ବସୁଧାଧିପସ୍ୟ କବୟୋହ୍ୟର୍ଥଂ ବିନାପୀଶ୍ୱରାଃ
କୁତ୍ସ୍ୟାଃ ସ୍ୟୁଃ କୁପରୀକ୍ଷକା ହି ମଣୟୋ ଯୈରର୍ଘତଃ ପାତିତାଃ ॥୧୫॥

ଅନ୍ୱୟ—ଯସ୍ୟ ପ୍ରଭୋଃ (ଯେଉଁ ପ୍ରଭୁଙ୍କର) ବିଷୟେ (ରାଜ୍ୟରେ) ଶାସ୍ତ୍ରୋପସ୍କୃତଶବ୍ଦସୁନ୍ଦରଗିରଃ (ଶାସ୍ତ୍ରୋଚିତ ସୁନ୍ଦର ଭାଷା ବ୍ୟବହାର କୁଶଳ) ଶିଷ୍ୟପ୍ରଦେୟାଗମାଃ (ଶିଷ୍ୟମାନଙ୍କୁ ବେଦାଦି ଶାସ୍ତ୍ର ପଢ଼ାଇବାରେ ନିପୁଣ) ବିଖ୍ୟାତାଃ (ଖ୍ୟାତନାମା) କବୟଃ (କବିମାନେ) ନିର୍ଦ୍ଧନାଃ ବସନ୍ତି (ଧନହୀନ ହୋଇ ବାସକରନ୍ତି) ବସୁଧାଧିପସ୍ୟ (ସେହି ରାଜାଙ୍କର) ତତ୍ ଜାଡ୍ୟଂ (ତାହାହିଁ ଜଡ଼ତା, ମୂର୍ଖତା) ଅର୍ଥଂ ବିନା ଅପି (ଅର୍ଥ ହୀନ ହେଲେ ମଧ୍ୟ) କବୟଃ ଈଶ୍ୱରାଃ (କବିମାନେ ସମସ୍ତଙ୍କର ପୂଜ୍ୟ) ହି (କାରଣ) କୁପରୀକ୍ଷକାଃ (ଭଲ ମନ୍ଦ ଜାଣିବାରେ ଅସମର୍ଥ) କୁତ୍ସ୍ୟାଃ ସ୍ୟୁଃ (ନିନ୍ଦନୀୟ ହୁଅନ୍ତି) ଯୈଃ ମଣୟଃ (ଯେଉଁମାନେ ମୂଲ୍ୟବାନ୍ ମଣିକୁ) ଅର୍ଘତଃ (ମୂଲ୍ୟହୀନ ମନେକରି) ପାତିତାଃ (ପକାଇଦିଅନ୍ତି) ।

ଅର୍ଥ—ଯେଉଁ ରାଜ୍ୟରେ ଶାସ୍ତ୍ରୋକ୍ତ ପଦାବଳୀ ବ୍ୟବହାରରେ କୁଶଳ ଓ ଶିଷ୍ୟମାନଙ୍କୁ ବେଦାଦି ଶାସ୍ତ୍ର ପଢ଼ାଇବାରେ ପ୍ରବୀଣ ପ୍ରସିଦ୍ଧ କବିମାନେ ଦରିଦ୍ର ଅବସ୍ଥାରେ ରହନ୍ତି ସେହି ରାଜା ମୂର୍ଖରୂପେ ଅଭିହିତ ହୁଏ । କବିମାନେ ଧନହୀନ ହେଲେବି ସମସ୍ତଙ୍କର ପୂଜ୍ୟ । କିନ୍ତୁ ଯେଉଁ ରାଜାମାନେ କୁପରୀକ୍ଷକ ସେମାନେ ନିନ୍ଦନୀୟ । କାରଣ, କୁପରୀକ୍ଷକ ଦ୍ୱାରା ମୂଲ୍ୟବାନ୍ ମଣି ମଧ୍ୟ ମୂଲ୍ୟହୀନ ହୋଇ ପଡିରହେ ।

ହର୍ତୁର୍ଯାତି ନ ଗୋଚରଂ କିମପି ଶଂ ପୁଷ୍ଣାତି ଯତ୍ସର୍ବଦା
ହ୍ୟର୍ଥିଭ୍ୟଃ ପ୍ରତିପାଦ୍ୟମାନମନିଶଂ ପ୍ରାପ୍ନୋତି ବୃଦ୍ଧିଂ ପରାମ୍ ।
କଳ୍ପାନ୍ତେଷ୍ୱପି ନ ପ୍ରୟାତି ନିଧନଂ ବିଦ୍ୟାଖ୍ୟମନ୍ତର୍ଦ୍ଧନଂ
ଯେଷାଂ ତାନ୍ପ୍ରତି ମାନମୁଜ୍ଝତ ନୃପାଃ କସ୍ତୈଃ ସହ ସ୍ପର୍ଦ୍ଧତେ ॥୧୬॥

ଅନ୍ୱୟ—ଯତ୍ (ଯାହା) ହର୍ତ୍ତୁଃ (ଚୋରର) ଗୋଚରଂ ନ ଯାତି (ଦୃଷ୍ଟିଗୋଚର ନ ହୁଏ) ସର୍ବଦା (ସବୁବେଳେ) କିମ୍ ଅପି ଶଂ ପୁଷ୍ଣାତି (କିଛି ନା କିଛି ମଙ୍ଗଳ କରେ) ଅର୍ଥିଭ୍ୟଃ ହି (ପ୍ରାର୍ଥୀମାନଙ୍କୁ) ପ୍ରତିପଦ୍ୟମାନଂ (ଦିଆଗଲେ) ଅନିଶଂ (ସର୍ବଦା) ପରାଂ ବୃଦ୍ଧିଂ ପ୍ରାପ୍ନୋତି (ଉତ୍ତରୋତ୍ତର ବଢ଼େ) କଳ୍ପାନ୍ତେଷୁ ଅପି (ବହୁକାଳ ଅତୀତ ହେଲେ ମଧ୍ୟ) ନିଧନଂ ନ

ପ୍ରସ୍ୱାତ (ନଷ୍ଟ ହୁଏ ନାହିଁ) ବିଦ୍ୟାଖ୍ୟଂ (ବିଦ୍ୟା ନାମକ) ଅନ୍ତର୍ଦ୍ଧନଂ (ଗୁପ୍ତଧନ) ଯେଷାଂ (ଯାହାର ଅଛି) ନୃପାଃ (ହେ ରାଜନ୍ୟବର୍ଗ) ତାନ୍ ପ୍ରତି (ସେମାନଙ୍କ ପ୍ରତି) ମାନମ୍ ଉଜ୍ଝତ (ଅଭିମାନ ତ୍ୟାଗ କର) କଃ ତୈଃ ସହ ସ୍ପର୍ଦ୍ଧତେ (ସେମାନଙ୍କ ସହିତ କିଏ ସ୍ପର୍ଦ୍ଧା କରିପାରିବ ?)

ଅର୍ଥ—ହେ ଶାସକବର୍ଗ ! ଯାହାକୁ ଚୋର ନେଇପାରେ ନାହିଁ, ଯେ ସର୍ବଦା କିଛି ନା କିଛି ମଙ୍ଗଳ କରେ, ଯାହା ଅନ୍ୟକୁ ଦାନକଲେ ଉତ୍ତରୋତ୍ତର ବୃଦ୍ଧି ପାଏ, କାଳ ଯାହାକୁ କ୍ଷୟ କରିପାରେ ନାହିଁ, ସେହି ବିଦ୍ୟା ନାମକ ଗୁପ୍ତଧନ ଯାହା ପାଖରେ ଅଛି, ତାହାକୁ କେବେହେଲେ ଅବହେଳା କରନାହିଁ । ସେହି ବିଦ୍ୱାନ୍‌ମାନଙ୍କ ସହିତ କିଏ ସ୍ପର୍ଦ୍ଧା କରିପାରିବ ?

> ଅଧିଗତପରମାର୍ଥାନ୍ ପଣ୍ଡିତାନ୍ମାବମଂସ୍ଥା-
> ସ୍ତୃଣମିବ ଲଘୁ ଲକ୍ଷ୍ମୀର୍ନୈବ ତାନ୍ ସଂରୁଣଦ୍ଧି ।
> ଅଭିନବମଦଲେଖାଶ୍ୟାମଗଣ୍ଡସ୍ଥଳାନାଂ
> ନ ଭବତି ବିସତନ୍ତୁର୍ବାରଣଂ ବାରଣାନାମ୍ ॥୧୭॥

ଅନ୍ୱୟ—ଅଧିଗତପରମାର୍ଥାନ୍ ପଣ୍ଡିତାନ୍ (ବ୍ରହ୍ମଜ୍ଞାନୀ ପଣ୍ଡିତମାନଙ୍କୁ) ମା ଅବମଂସ୍ଥା (ଅବମାନନା କର ନାହିଁ) ଲକ୍ଷ୍ମୀଃ (ଧନ) ଲଘୁ ତୃଣମ୍ ଇବ (ତୃଣ ପରି) ତାନ୍ ନୈବ ସଂରୁଣଦ୍ଧି (ସେମାନଙ୍କୁ ବାନ୍ଧି ରଖିପାରେ ନାହିଁ) ବିସତନ୍ତୁଃ (ମୃଣାଳସୂତ୍ର) ଅଭିନବମଦଲେଖାଶ୍ୟାମଗଣ୍ଡସ୍ଥଳାନାଂ ବାରଣାନାଂ (ମଦୋନ୍ମତ୍ତ ହାତୀମାନଙ୍କୁ) ବାରଣଂ (ଆଟକିବା) ନ ଭବତି (କରିପାରେ ନାହିଁ) ।

ଅର୍ଥ—ବ୍ରହ୍ମଜ୍ଞାନୀ ପଣ୍ଡିତମାନଙ୍କୁ ରାଜାରେ କେବେହେଲେ ଅବମାନନା କର ନାହିଁ । ଧନ ସେମାନଙ୍କୁ ବାନ୍ଧି ରଖିପାରେ ନାହିଁ । ଧନକୁ ସେମାନେ ତୃଣବତ୍ ତୁଚ୍ଛ ମନେକରନ୍ତି । ଉଦାହରଣ ସ୍ୱରୂପ, ଯେଉଁ ହାତୀମାନଙ୍କର ଗଣ୍ଡସ୍ଥଳ ମଦଜଳ ସ୍ରାବରେ ଶ୍ୟାମଳ ବର୍ଣ୍ଣ ହୋଇଥାଏ, ସେହି ମଦୋନ୍ମତ୍ତ ହାତୀମାନଙ୍କୁ ପଦ୍ମନାଡ଼ର ସୂତାରେ ବାନ୍ଧି ରଖିହୁଏ ନାହିଁ ।

ଅମ୍ଭୋଜିନୀବନନିବାସବିଳାସମେବ
ହଂସସ୍ୟ ହନ୍ତି ନିତରାଂ କୁପିତୋ ବିଧାତା ।
ନ ତ୍ୱସ୍ୟ ଦୁଗ୍ଧଜଳଭେଦବିଧୌ ପ୍ରସିଦ୍ଧାଂ
ବୈଦଗ୍ଧ କୀର୍ତ୍ତିମପହର୍ତ୍ତୁମସୌ ସମର୍ଥଃ ॥୧୮।

ଅନ୍ୱୟ—ବିଧାତା ନିତରାଂ କୁପିତଃ (ବିଧାତା ଅତି ରାଗିଗଲେ) ହଂସସ୍ୟ ଅମ୍ଭୋଜିନୀବନନିବାସବିଳାସମ୍ ଏବ (ହଂସର ପଦ୍ମବନରେ ବାସ କରିବା ସୁଖକୁ) ହନ୍ତି (ନଷ୍ଟ କରନ୍ତି) ତୁ (କିନ୍ତୁ) ଅସୌ (ସେହି ବିଧାତା) ଅସ୍ୟ (ହଂସର) ଦୁଗ୍ଧଜଳଭେଦବିଧୌ (ଦୁଧ ଓ ପାଣିକୁ ଅଲଗା କରିବା ବିଷୟକ) ପ୍ରସିଦ୍ଧାଂ ବୈଦଗ୍ଧକୀର୍ତ୍ତିଂ (ପ୍ରସିଦ୍ଧ ପାଣ୍ଡିତ୍ୟ ରୂପକ ସୁନାମକୁ) ଅପହର୍ତ୍ତୁଂ (ଦୂର କରିବା, ଅପହରଣ କରିବା ପାଇଁ) ନ ସମର୍ଥଃ (ସମର୍ଥ ହୁଅନ୍ତି ନାହିଁ ) ।

ଅର୍ଥ—ବିଧାତା ଅତି କ୍ରୋଧାନ୍ୱିତ ହେଲେ ହଂସର ପଦ୍ମବନରେ ବାସକରିବା ରୂପକ ବିଳାସ ବା ସୁଖକୁ ନଷ୍ଟ କରିଦିଅନ୍ତି । କିନ୍ତୁ ଯେତେ କ୍ରୋଧ କଲେ ମଧ୍ୟ ବିଧାତା ହଂସର କ୍ଷୀରନୀରକୁ ପୃଥକ୍ କରିବାର କୀର୍ତ୍ତିକୁ ନଷ୍ଟ କରିବା ପାଇଁ ସମର୍ଥ ହୁଅନ୍ତି ନାହିଁ । ସେହିପରି ରାଜା କ୍ରୋଧାନ୍ୱିତ ହୋଇ ପଣ୍ଡିତଙ୍କୁ ରାଜ୍ୟରୁ ବାହାର କରିଦେଇ ପାରନ୍ତି, କିନ୍ତୁ ପଣ୍ଡିତଙ୍କର ପାଣ୍ଡିତ୍ୟକୁ ଦୂର କରିପାରନ୍ତି ନାହିଁ ।

କେୟୂରା ନ ବିଭୂଷୟନ୍ତି ପୁରୁଷଂ ହାରା ନ ଚଂଦ୍ରୋଜ୍ଜ୍ୱଳା
ନ ସ୍ନାନଂ ନ ବିଲେପନଂ ନ କୁସୁମଂ ନାଳଂକୃତା ମୂର୍ଦ୍ଧଜାଃ ।
ବାଣ୍ୟେକା ସମଳଂ କରୋତି ପୁରୁଷଂ ଯା ସଂସ୍କୃତା ଧାର୍ଯ୍ୟତେ
କ୍ଷୀୟନ୍ତେ ଖଳୁ ଭୂଷଣାନି ସତତଂ ବାଗ୍‌ଭୂଷଣଂ ଭୂଷଣମ୍ ॥୧୯॥

ଅନ୍ୱୟ—କେୟୂରାଃ (ବାହୁର ଅଳଙ୍କାର ବିଶେଷ) ପୁରୁଷଂ ନ ବିଭୂଷୟନ୍ତି (ପୁରୁଷକୁ ଅଳଂକୃତ କରେ ନାହିଁ) ଚନ୍ଦ୍ରୋଜ୍ଜ୍ୱଳାଃ ହାରାଃ ନ (ଚନ୍ଦ୍ର ତୁଲ୍ୟ ଉଜ୍ଜ୍ୱଳହାର ନୁହେଁ) ସ୍ନାନଂ ନ (ସ୍ନାନ ନୁହେଁ) ବିଲେପନଂ ନ

(ଚନ୍ଦନାଦି ନୁହେଁ) କୁସୁମଂ ନ (ଫୁଲ ନୁହେଁ) ଅଲଂକୃତାଃ ମୂର୍ଦ୍ଧଜାଃ ନ (ସୁସଜ୍ଜିତ କେଶ ନୁହେଁ) ଯା ସଂସ୍କୃତା ବାଣୀ ଧାର୍ଯ୍ୟତେ (ଯେଉଁ ବିଶୁଦ୍ଧ ଭିଷାଜ୍ଞାନ ଥାଏ) ଏକା ସା ପୁରୁଷଂ ସମଲଙ୍କରୋତି (ସେହି ଏକା ପୁରୁଷକୁ ଅଲଂକୃତ କରେ) ଭୂଷଣାନି ଖଳୁ ସତତଂ କ୍ଷୀୟନ୍ତେ (ଅଲଙ୍କାରଗୁଡ଼ିକ ସର୍ବଦା କ୍ଷୟ ହୁଅନ୍ତି) ବାଗ୍‌ଭୂଷଣଂ (ବଚନ ରୂପକ ଭୂଷଣ) ସତତଂ ଭୂଷଣମ୍ (ସର୍ବଦା ଅକ୍ଷୟ ଭୂଷଣ ହୋଇ ରହେ) ।

ଅର୍ଥ କେୟୁର ପ୍ରଭୃତି ଭୂଷଣ ପୁରୁଷକୁ ଭୂଷିତ କରେ ନାହିଁ କି ସୁନ୍ଦର ହାର, ସ୍ନାନ, ଚନ୍ଦନ, ପୁଷ୍ପ, ସୁସଜ୍ଜିତ କେଶ କେହି ତାର ଶୋଭା ବର୍ଦ୍ଧନ କରନ୍ତି ନାହିଁ । କେବଳ ବିଶୁଦ୍ଧ ଭାଷା ଜ୍ଞାନହିଁ ପୁରୁଷକୁ ଅଲଂକୃତ କରେ । କେୟୁରାଦି ଭୂଷଣ କ୍ଷୟ ହୋଇଯାଏ, କିନ୍ତୁ ବାଣୀ ରୂପକ ଭୂଷଣ ସର୍ବଦା ଅକ୍ଷୟ ଭୂଷଣ ହୋଇ ରହେ ।

ବିଦ୍ୟା ନାମ ନରସ୍ୟ ରୂପମଧିକଂ ପ୍ରଚ୍ଛନ୍ନଗୁପ୍ତଂ ଧନଂ<br>
ବିଦ୍ୟା ଭୋଗକରୀ ଯଶଃ ସୁଖକରୀ ବିଦ୍ୟା ଗୁରୂଣାଂଗୁରୁଃ ।<br>
ବିଦ୍ୟା ବନ୍ଧୁଜନୋ ବିଦେଶଗମନେ ବିଦ୍ୟାପରଂ ଦୈବତଂ<br>
ବିଦ୍ୟା ରାଜସୁପୂଜିତା ନହି ଧନଂ ବିଦ୍ୟା ବିହୀନଃ ପଶୁଃ ॥୨୦॥

ଅନ୍ୱୟ—ବିଦ୍ୟା ନାମ (ବିଦ୍ୟାହିଁ) ନରସ୍ୟ ଅଧିକଂ ରୂପଂ (ଲୋକର ବିଶେଷ ରୂପ) ପ୍ରଚ୍ଛନ୍ନଗୁପ୍ତଂ ଧନଂ (ଅତି ଗୁପ୍ତଧନ) ବିଦ୍ୟା ଭୋଗକରୀ (ସୁଖ-ଭୋଗଦାୟୀ) ଯଶଃ ସୁଖକରୀ (କୀର୍ତ୍ତି ଓ ସୁଖଦାୟିନୀ) ଗୁରୂଣାଂ ଗୁରୁଃ (ଗୁରୁଙ୍କ ଗୁରୁ) ବିଦେଶଗମନେ (ବିଦେଶ ଯିବାରେ) ବିଦ୍ୟା ବଂଧୁଜନଃ (ବିଦ୍ୟା ବଂଧୁରୂପେ ସହାୟକ ହୁଏ) ବିଦ୍ୟା ପରଂ ଦୈବତଂ (ଶ୍ରେଷ୍ଠ ଦେବତା) ବିଦ୍ୟା ରାଜସୁ ପୂଜିତା (ଶାସକ ସମାଜରେ ପୂଜାପାଏ) ନ ହି ଧନଂ (ଧନ ନୁହେଁ) ବିଦ୍ୟା ବିହୀନଃ ପଶୁଃ (ବିଦ୍ୟାହୀନ ପଶୁସଦୃଶ) ।

ଅର୍ଥ—ବିଦ୍ୟା ହେଉଛି ମଣିଷର ବିଶେଷ ରୂପ ଓ ଅତି ଗୁପ୍ତଧନ । ବିଦ୍ୟା ସମସ୍ତ ଭୋଗର ଆଧାର । ଯଶ ଓ ସୁଖଦାୟୀ । ବିଦ୍ୟା ଗୁରୁମାନଙ୍କର ଗୁରୁ । ବିଦେଶ ଯାତ୍ରାରେ ବିଦ୍ୟା ବଂଧୁ ପରି ସାହାଯ୍ୟ କରେ । ବିଦ୍ୟା

ହୋଇଛନ୍ତି ଶ୍ରେଷ୍ଠ ଦେବତା । ରାଜସଭାରେ ଧନ ନୁହେଁ, ବିଦ୍ୟାହିଁ ପୂଜା ପାଏ । ତେଣୁ ବିଦ୍ୟାହୀନ ବ୍ୟକ୍ତି ପଶୁରୂପେ ବିବେଚିତ ହୁଏ ।

କ୍ଷାନ୍ତିଶ୍ଚେତ୍କବଚେନ କିଂ କିମରିଭିଃ କ୍ରୋଧୋଽସ୍ତି ଚେଦ୍ଦେହିନାଂ
ଜ୍ଞାତିଶ୍ଚେଦନଳେନ କିଂ ଯଦି ସୁହୃଦ୍ଦିବ୍ୟୌଷଧୈଃ କିଂ ଫଳମ୍ ।
କିଂ ସର୍ପୈର୍ଯଦି ଦୁର୍ଜନାଃ କିମୁଧନୈର୍ବିଦ୍ୟାନବଦ୍ୟା ଯଦି
ବ୍ରୀଡ଼ା ଚେତ୍କିମୁ ଭୂଷଣୈଃ ସୁକବିତା ଯଦ୍ୟସ୍ତି ରାଜ୍ୟେନ କିମ୍ ॥୨୧॥

ଅନ୍ୱୟ—ଦେହିନାଂ (ଦେହଧାରୀ, ମଣିଷର) କ୍ଷାନ୍ତିଃ ଅସ୍ତି ଚେତ୍ (ଯଦି ଦୟା, କ୍ଷମା ଅଛି) କବଚେନ କିମ୍ (କବଚ ଧାରଣ ନିଷ୍ପ୍ରୟୋଜନ) କ୍ରୋଧଃ ଅସ୍ତି ଚେତ୍ (ଯଦି କ୍ରୋଧ ଅଛି) ଅରିଭିଃ କିମ୍ (ଶତ୍ରୁର ଆବଶ୍ୟକତା ନାହିଁ) ଜ୍ଞାତିଃ ଚେତ୍ (କୁଟୁମ୍ବ ଯଦି ଅଛନ୍ତି) ଅନଲେନ କିମ୍ (ଅଗ୍ନି ନିଷ୍ପ୍ରୟୋଜନ) ଯଦି ସୁହୃଦ୍ ଅସ୍ତି (ଯଦି ମିତ୍ର ଅଛି) ଦିବ୍ୟୌଷଧୈଃ କିଂ ଫଳମ୍ (ଉତ୍ତମ ଔଷଧରେ କି ପ୍ରୟୋଜନ ?) ଯଦି ଦୁର୍ଜନାଃ (ଯଦି ଦୁଷ୍ଟ ଲୋକେ ଅଛନ୍ତି) ସର୍ପୈଃ କିମ୍ (ସର୍ପରେ ପ୍ରୟୋଜନ ନାହିଁ) ଯଦି ଅନବଦ୍ୟା ବିଦ୍ୟା (ଯଦି ପ୍ରଶଂସନୀୟ ବିଦ୍ୟା ଅଛି) ଧନୈଃ କିମୁ (ଧନ କଣ ଦରକାର ?) ବ୍ରୀଡ଼ାଚେତ୍ ଭୂଷଣୈଃ କିମୁ (ଲଜ୍ଜା ଅଛି ତ ଅଳଙ୍କାରରେ କି ପ୍ରୟୋଜନ ?) ଯଦି ସୁକବିତା ଅସ୍ତି ( ଯଦି ଉତ୍ତମ କବିତା ରଚନା ଶକ୍ତି ଅଛି) ରାଜ୍ୟେନ କିମ୍ (ରାଜ୍ୟରେ କି ଲାଭ ?)

ଅର୍ଥ—କ୍ଷମାଶୀଳ, ଦୟାଳୁ ବ୍ୟକ୍ତିର କବଚ ଧାରଣ ଅନାବଶ୍ୟକ, କାରଣ କ୍ଷମାଗୁଣହିଁ ତାକୁ ରକ୍ଷାକରେ । ସେହିପରି କ୍ରୋଧ ଥିଲେ ଶତ୍ରୁର, କୁଟୁମ୍ବ ଥିଲେ ଅଗ୍ନି ସଜ୍ଜାପର ପ୍ରୟୋଜନ ନାହିଁ । କାରଣ କ୍ରୋଧ ଶତ୍ରୁପରି ଓ ଭାଇଭଗାରି ଅଗ୍ନିପରି ଦୁଃଖ ଦିଅନ୍ତି । ଯଦି ସୁହୃତ୍ ମିତ୍ର ଅଛି ତେବେ ଔଷଧ, ଦୁର୍ଜନ ବ୍ୟକ୍ତି ପାଖରେ ଥିଲେ ସର୍ପର ନିକଟକୁ ଯିବା ଆବଶ୍ୟକ ନାହିଁ । ପ୍ରଶଂସନୀୟ ବିଦ୍ୟା ଥିଲେ ଧନର, ଲଜ୍ଜା ଥିଲେ ଅଳଙ୍କାରର ଓ ଉତ୍ତମ କବିତା ରଚନା କରିବାର ସାମର୍ଥ୍ୟ ଥିଲେ ରାଜ୍ୟଲାଭର ପ୍ରୟୋଜନ ନାହିଁ ।

ଦାକ୍ଷିଣ୍ୟଂ ସ୍ୱଜନେ ଦୟା ପରଜନେ ଶାଠ୍ୟଂ ସଦା ଦୁର୍ଜନେ
ପ୍ରୀତିଃ ସାଧୁଜନେ ନୟୋ ନୃପଜନେ ବିଦ୍ୱଜ୍ଜନେଷ୍ୱାର୍ଜବମ୍ ।
ଶୌର୍ଯ୍ୟଂ ଶତ୍ରୁଜନେ କ୍ଷମା ଗୁରୁଜନେ ନାରୀଜନେ ଧୂର୍ତ୍ତତା
ଯେ ଚୈବଂ ପୁରୁଷାଃ କଳାସୁ କୁଶଳାସ୍ତେଷ୍ୱେବ ଲୋକସ୍ଥିତିଃ ॥୨୨॥

ଅନ୍ୱୟ—ଯେ ପୁରୁଷାଃ (ଯେଉଁ ଲୋକମାନେ) ସ୍ୱଜନେ ଦାକ୍ଷିଣ୍ୟଂ (ଆତ୍ମୀୟମାନଙ୍କଠାରେ ଉଦାରତା) ପରଜନେ ଦୟା (ଭୃତ୍ୟଙ୍କଠାରେ ଦୟା) ଦୁର୍ଜନେ ସଦା ଶାଠ୍ୟଂ (ସର୍ବଦା ଦୁର୍ଜନଠାରେ ପ୍ରତାରଣା) ସାଧୁଜନେ ପ୍ରୀତିଃ (ସାଧୁଙ୍କଠାରେ ସ୍ନେହ) ନୃପଜନେ ନୟଃ (ରାଜାଙ୍କଠାରେ ନମ୍ରତା) ବିଦ୍ୱଜ୍ଜନେଷୁ ଆର୍ଜବଂ (ବିଦ୍ୱାନ୍ ଲୋକମାନଙ୍କଠାରେ ସରଳତା) ଶତ୍ରୁଜନେ ଶୌର୍ଯ୍ୟଂ (ଶତ୍ରୁଠାରେ ବୀରତ୍ୱ) ଗୁରୁଜନେ କ୍ଷମା (ଗୁରୁଜନଙ୍କଠାରେ କ୍ଷମା) ନାରୀଜନେ ଧୂର୍ତ୍ତତା (ନାରୀମାନଙ୍କଠାରେ ଚତୁରତା ପ୍ରକାଶ କରନ୍ତି) ଏବଂ କଳାସୁ ଚ କୁଶଳାଃ (ଏବଂ କଳା ବିଦ୍ୟାରେ ନିପୁଣ) ତେଷୁ ଏବ ଲୋକସ୍ଥିତିଃ (ସେମାନଙ୍କଠାରେ ଲୋକଙ୍କର ଆସ୍ଥା ରହେ) ।

ଅର୍ଥ—ଯେଉଁମାନେ ଆତ୍ମୀୟଙ୍କଠାରେ ଉଦାର, ଭୃତ୍ୟମାନଙ୍କ ପ୍ରତି ଦୟାଶୀଳ, ଦୁଷ୍ଟଲୋକଙ୍କଠାରେ ଶଠତା, ସଜ୍ଜନଙ୍କଠାରେ ସ୍ନେହ, ରାଜାଙ୍କ-ଠାରେ (ଉପରସ୍ଥଙ୍କ ଆଗରେ) ନମ୍ରତା, ଶତ୍ରୁଠାରେ ବୀରତ୍ୱ, ଗୁରୁଜନଙ୍କ ପ୍ରତି କ୍ଷମାଶୀଳ ଏବଂ ସ୍ତ୍ରୀମାନଙ୍କଠାରେ ଧୂର୍ତ୍ତତା ବା ଚତୁରତା ପ୍ରକାଶ କରନ୍ତି ତଥା କଳା ବିଦ୍ୟାରେ ନିପୁଣତା ଅର୍ଜନ କରିଛନ୍ତି, ସେମାନଙ୍କଠାରେ ଲୋକଙ୍କର ଆସ୍ଥା ଥାଏ ।

ଜାଡ୍ୟଂ ଧିୟୋ ହରତି ସିଞ୍ଚତି ବାଚି ସତ୍ୟଂ
ମାନୋନ୍ନତିଂ ଦିଶତି ପାପମପାକରୋତି ।
ଚେତଃ ପ୍ରସାଦୟତି ଦିକ୍ଷୁ ତନୋତି କୀର୍ତ୍ତିଂ
ସତ୍ସଙ୍ଗତିଃ କଥୟ କିଂ ନ କରୋତି ପୁଂସାମ୍ ॥୨୩॥

ଅନ୍ୱୟ—ସତ୍ସଙ୍ଗତିଃ (ସାଧୁଜନ ସଂସର୍ଗ) ଧିୟଃ (ବୁଦ୍ଧିର) ଜାଡ୍ୟଂ ହରତି (ଜଡ଼ତା ଦୂର କରେ) ବାଚି ସତ୍ୟଂ ସିଞ୍ଚତି (ବଚନରେ ସତ୍ୟ

ସେଚନ କରେ) ମାନୋନ୍ନତିଂ ଦିଶତି (ସମ୍ମାନ ବୃଦ୍ଧି କରେ) ପାପମ୍ ଅପାକରୋତି (ପାପ ଦୂର କରେ) ଚେତଃ ପ୍ରସାଦୟତି (ମନ ନିର୍ମଳ କରେ) କୀର୍ତ୍ତିଂ ଦିକ୍ଷୁ ତନୋତି (ଯଶ ଚତୁର୍ଦ୍ଦିଗରେ ବିସ୍ତାର କରେ) କଥୟ ସତ୍ସଙ୍ଗତିଃ ପୁଂସାଂ କିଂ ନ କରୋତି (କୁହ, ସାଧୁସଙ୍ଗ ଲୋକର କଣ ନକରେ ?)

ଅର୍ଥ—ସଜ୍ଜନ ସଙ୍ଗତି ପୁରୁଷମାନଙ୍କର ବୁଦ୍ଧିମାନ୍ଦ୍ୟ ଦୂର କରେ, ବଚନରେ ସତ୍ୟ ସେଚନ କରେ, ସମ୍ମାନ ବଢ଼ାଏ, ପାପ ଦୂରକରେ, ମନ ନିର୍ମଳ କରେ, ଚତୁର୍ଦ୍ଦିଗରେ ସୁନାମ ବିସ୍ତାର କରେ । କଣ ନକରେ କୁହ ? ସାଧୁ ସଂସର୍ଗ ଦ୍ୱାରା ଲୋକର ସାମୂହିକ କଲ୍ୟାଣ ସାଧିତ ହୋଇଥାଏ ।

ଜୟନ୍ତି ତେ ସୁକୃତିନୋ ରସସିଦ୍ଧାଃ କବୀଶ୍ୱରାଃ
ନାସ୍ତି ଯେଷାଂ ଯଶଃ କାୟେ ଜରାମରଣଜଂ ଭୟମ୍ ॥୨୪॥

ଅନ୍ୱୟ—ସୁକୃତିନଃ (ଖ୍ୟାତିପ୍ରାପ୍ତ) ରସସିଦ୍ଧାଃ (ରସମୟ ରଚନାରେ ଦକ୍ଷ) ତେ କବୀଶ୍ୱରାଃ (ସେହି ଶ୍ରେଷ୍ଠ କବିଗଣ) ଜୟନ୍ତି (ଜୟଯୁକ୍ତ ହୁଅନ୍ତି) ଯେଷାଂ (ଯେଉଁମାନଙ୍କର) ଯଶଃକାୟେ (ଯଶରୂପକ ଶରୀରରେ) ଜରାମରଣଜଂ (ବାର୍ଦ୍ଧକ୍ୟ ଓ ମୃତ୍ୟୁଜନିତ) ଭୟଂ ନାସ୍ତି (ଭୟ ନାହିଁ) ।

ଅର୍ଥ—ରସମୟ ରଚନାରେ ଖ୍ୟାତିପ୍ରାପ୍ତ ଶ୍ରେଷ୍ଠ କବିଗଣ ଚିରକାଳ ପାଇଁ ଅମର ହୋଇ ରହନ୍ତି । କାରଣ, ସେମାନଙ୍କର ଯଶରୂପକ ଶରୀରକୁ ବାର୍ଦ୍ଧକ୍ୟ ଓ ମୃତ୍ୟୁଜନିତ ଭୟ କେବେହେଲେ ଗ୍ରାସେ ନାହିଁ ।

ସୂନୁଃ ସଚ୍ଚରିତଃ ସତୀ ପ୍ରିୟତମା ସ୍ୱାମୀ ପ୍ରସାଦୋନ୍ମୁଖଃ
ସ୍ନିଗ୍ଧଂ ମିତ୍ରମବଞ୍ଚକଃ ପରିଜନୋ ନିଷ୍କ୍ଲେଶଲେଶଂ ମନଃ ।
ଆକାରୋ ରୁଚିରଃ ସ୍ଥିରଶ୍ଚ ବିଭବୋ ବିଦ୍ୟାବଦାତଂ ମୁଖଂ
ତୁଷ୍ଟେ ବିଷ୍ଟପହାରିଣୀଷ୍ଟଦହରୌ ସଂପ୍ରାପ୍ୟତେ ଦେହିନା ॥୨୫॥

ଅନ୍ୱୟ—ବିଷ୍ଟପହାରିଣି (ସଂସାର ଦୁଃଖ ନାଶକ) ଇଷ୍ଟଦହରୌ ତୁଷ୍ଟେ (ଅଭୀଷ୍ଟ ଫଳଦାୟକ ହରି ସନ୍ତୁଷ୍ଟ ହେଲେ) ଦେହିନା (ଲୋକ) ସଚ୍ଚରିତଃ ସୂନୁଃ (ସଚ୍ଚରିତ୍ର ପୁତ୍ର) ସତୀ ପ୍ରିୟତମା (ସାଧ୍ୱୀ ପତ୍ନୀ) ପ୍ରସାଦୋନ୍ମୁଖଃ ସ୍ୱାମୀ

(ସଦା ପ୍ରସନ୍ନ ପ୍ରଭୁ) ସ୍ନିଗ୍‌ଧଂ ମିତ୍ରଂ (ସ୍ନେହଶୀଳ ବନ୍ଧୁ) ଅବଞ୍ଚକଃ ପରିଜନଃ -ବିଶ୍ୱସ୍ତ ଭୃତ୍ୟ) ନିକ୍ଳେଶଲେଶଂ ମନଃ (ଦୁଃଖରହିତ ମନ) ରୁଚିରଃ ଆକାରଃ (ସୁନ୍ଦର ଆକୃତି) ସ୍ଥିରଃ ବିଭବଃ ଚ (ସ୍ଥିରଧନ) ବିଦ୍ୟାବଦାତଂ ମୁଖଂ (ବିଦ୍ୟାଦ୍ୱାରା ଉଜ୍ଜ୍ୱଳ ମୁଖ) ସଂପ୍ରାପ୍ୟତେ (ମିଳେ) ।

ଅର୍ଥ—ସଂସାର ଦୁଃଖ ହରଣକାରୀ ହରି ସନ୍ତୁଷ୍ଟ ହେଲେ ଲୋକ ଉତ୍ତମ ଚରିତ୍ରବାନ୍ ପୁତ୍ର, ସାଧ୍ୱୀ ପତ୍ନୀ, ସର୍ବଦା ପ୍ରସନ୍ନ ପ୍ରଭୁ, ସ୍ନେହପରାୟଣ ମିତ୍ର, ବିଶ୍ୱସ୍ତ ଭୃତ୍ୟ, ନିର୍ଶ୍ଚିନ୍ତ ମନ, ସୁନ୍ଦର ଶରୀର, ସ୍ଥିର ଧନ-ସମ୍ପଦ ଓ ବିଦ୍ୟାରେ ଉଜ୍ଜ୍ୱଳ ମୁଖ ଲାଭ କରିଥାଏ । ଭଗବାନ୍ ନାରାୟଣଙ୍କ କୃପାରୁ ମଣିଷ ସର୍ବଦା ଓ ସର୍ବଥା ସୁଖୀ ହୁଏ ।

ପ୍ରାଣାଘାତାନ୍ନିବୃତ୍ତିଃ ପରଧନହରଣେ ସଂଯମଃ ସତ୍ୟବାକ୍ୟଂ
କାଲେ ଶକ୍ତ୍ୟା ପ୍ରଦାନଂ ଯୁବତିଜନକଥାମୂକଭାବଃ ପରେଷାମ୍ ।
ତୃଷ୍ଣାସ୍ରୋତୋ ବିଭଙ୍ଗୋ ଗୁରୁଷୁ ଚ ବିନୟଃ ସର୍ବଭୂତାନୁକମ୍ପା
ସାମାନ୍ୟଃ ସର୍ବଶାସ୍ତ୍ରେଷ୍ୱନୁପହତବିଧିଃ ଶ୍ରେୟସାମେଷ ପନ୍ଥାଃ ॥୨୬॥

ଅନ୍ୱୟ—ପ୍ରାଣଘାତାତ୍ ନିବୃତ୍ତିଃ (ଜୀବହିଂସାରୁ ନିବୃତ୍ତି) ପରଧନହରଣେ ସଂଯମଃ (ପରର ସମ୍ପତ୍ତି ଅପହରଣ ନକରିବା) ସତ୍ୟବାକ୍ୟଂ (ସତ କହିବା) କାଲେ ଶକ୍ତ୍ୟା ପ୍ରଦାନଂ (ଯଥାସମୟରେ ଯଥାଶକ୍ତି ଦାନ) ପରେଷାଂ ଯୁବତିଜନକଥାମୂକଭାବଃ (ଅନ୍ୟର ସ୍ତ୍ରୀ ବିଷୟକ ଆଲୋଚନାରେ ନୀରବ ରହିବା) ତୃଷ୍ଣା ସ୍ରୋତୋ ବିଭଙ୍ଗଃ (ଲୋଭଠାରୁ ଦୂରେଇ ରହିବା) ଗୁରୁଷୁ ଚ ବିନୟଃ (ଗୁରୁଜନଙ୍କ ଆଗରେ ବିନୟୀ ହେବା) ସର୍ବଭୂତାନୁକମ୍ପା (ପ୍ରାଣୀମାନଙ୍କ ପ୍ରତି ଦୟାଭାବ ପୋଷଣ) ସର୍ବଶାସ୍ତ୍ରେଷୁ ସାମାନ୍ୟଃ ଅନୁପହତବିଧିଃ (ଶାସ୍ତ୍ରର ବିଧିବିଧାନ ବିଷୟରେ ସାଧାରଣଭାବେ ଅବହିତ ହେବା) ଏଷଃ ଶ୍ରେୟସାଂ ପନ୍ଥାଃ (ଏହାହିଁ କଲ୍ୟାଣ ପ୍ରାପ୍ତିର ମୁଖ୍ୟ ମାର୍ଗ) ।

ଅର୍ଥ—ଜୀବହିଂସା ଓ ପରଧନ ଅପହରଣ ନକରିବା, ସତ୍ୟ କହିବା, ଯଥାସମୟରେ ଯଥାଶକ୍ତି ଦାନ କରିବା, ଅନ୍ୟ ସ୍ତ୍ରୀ ବିଷୟକ ଆଲୋଚନାରେ

ନୀରବ ରହିବା, ଲୋଭ ନକରିବା, ଗୁରୁଜନମାନଙ୍କଠାରେ ବିନମ୍ରୀ ହେବା, ପ୍ରାଣୀମାନଙ୍କ ପ୍ରତି ଦୟାକରିବା, ଶାସ୍ତ୍ରର ବିଧିବିଧାନ ବିଷୟରେ ସାମାନ୍ୟଭାବେ ଅବହିତ ହେବା, କଲ୍ୟାଣ ପ୍ରାପ୍ତିର ମାର୍ଗରୂପେ ଅଭିହିତ। ଏହି ମାର୍ଗ ଅବଲମ୍ବନ କଲେ ଲୋକର ମଙ୍ଗଳହୁଏ ।

ପ୍ରାରଭ୍ୟତେ ନ ଖଳୁ ବିଘ୍ନଭୟେନ ନୀଚୈଃ
ପ୍ରାରଭ୍ୟ ବିଘ୍ନନିହତା ବିରମନ୍ତି ମଧ୍ୟାଃ ।
ବିଘ୍ନୈଃ ପୁନଃ ପୁନରପି ପ୍ରତିହନ୍ୟମାନାଃ
ପ୍ରାରବ୍ଧମୁତ୍ତମଜନା ନ ପରିତ୍ୟଜନ୍ତି ॥୨୭॥

ଅନ୍ୱୟ—ନୀଚୈଃ ବିଘ୍ନଭୟେନ ନ ଖଳୁ ପ୍ରାରଭ୍ୟତେ (ନୀଚ ବା ଅଧମ ଶ୍ରେଣୀସ୍ଥ ଲୋକେ ବିଘ୍ନ ଭୟରେ କିଛି ଆରମ୍ଭ କରନ୍ତି ନାହିଁ), ମଧ୍ୟାଃ ପ୍ରାରଭ୍ୟ (ମଧ୍ୟମ ଶ୍ରେଣୀସ୍ଥ ଲୋକେ ଆରମ୍ଭ କରି) ବିଘ୍ନନିହତାଃ ବିରମନ୍ତି (ବିଘ୍ନର ସମ୍ମୁଖୀନ ହୋଇ କାର୍ଯ୍ୟ ତ୍ୟାଗ କରନ୍ତି) ଉତ୍ତମଜନାଃ (ଉତ୍ତମଲୋକେ) ବିଘ୍ନୈଃ ପୁନଃ ପୁନଃ ପ୍ରତିହନ୍ୟମାନାଃ ଅପି (ବିଘ୍ନଦ୍ୱାରା ବାରମ୍ବାର ପ୍ରତିହତ ହେଲେ ମଧ୍ୟ) ପ୍ରାରବ୍ଧଂ ନ ପରିତ୍ୟଜନ୍ତି (ଆରମ୍ଭ କରିଥିବା କାର୍ଯ୍ୟକୁ ପରିତ୍ୟାଗ କରନ୍ତି ନାହିଁ ।

ଅର୍ଥ—ସଂସାରରେ ଥିବା ଅଧମ ଶ୍ରେଣୀସ୍ଥ ଲୋକେ ବିଘ୍ନ ଭୟରେ କୌଣସି କାର୍ଯ୍ୟ ଆରମ୍ଭ କରନ୍ତି ନାହିଁ । ମଧ୍ୟମ ଶ୍ରେଣୀସ୍ଥ ଲୋକେ ବିଘ୍ନର ସମ୍ମୁଖୀନ ହୋଇ ମଝିରୁ କାର୍ଯ୍ୟ ତ୍ୟାଗ କରନ୍ତି । କିନ୍ତୁ ଉତ୍ତମ ଶ୍ରେଣୀସ୍ଥ ଲୋକେ ବାରମ୍ବାର ବିଘ୍ନଦ୍ୱାରା ପ୍ରତିହତ ହେଲେ ମଧ୍ୟ ଆରମ୍ଭ କରିଥିବା କାର୍ଯ୍ୟରୁ କେବେହେଲେ ବିରତ ହୁଅନ୍ତି ନାହିଁ ।

ଅସନ୍ତୋ ନାଭ୍ୟର୍ଥ୍ୟାଃ ସୁହୃଦପି ନ ଯାଚ୍ୟଃ କୃଶଧନଃ
ପ୍ରିୟା ନ୍ୟାଯ୍ୟା ବୃତ୍ତିର୍ମଳିନମସୁଭଙ୍ଗେପ୍ୟସୁକରମ୍ ।
ବିପଦ୍ୟୁଚ୍ଚୈଃ ସ୍ଥେୟଂ ପଦମନୁବିଧେୟଂ ଚ ମହତାଂ
ସତାଂ କେନୋଦ୍ଦିଷ୍ଟଂ ବିଷମସିଧାରାବ୍ରତମିଦମ୍ ॥୨୮॥

ଅନ୍ୱୟ—ଅସନ୍ତଃ ନ ଅଭ୍ୟର୍ଥ୍ୟାଃ (ଦୁର୍ଜନକୁ ଅଭ୍ୟର୍ଥନା କରିବା ଉଚିତ ନୁହେଁ) କୃଶଧନଃ ସୁହୃତ୍ ଅପି (ଦରିଦ୍ର ବା କ୍ଷୀଣଧନ ହୋଇଥିବା ବନ୍ଧୁକୁ ମଧ୍ୟ) ନ ଯାଚ୍ୟ (ମାଗିବା ଉଚିତ ନୁହେଁ) ପ୍ରିୟା ନ୍ୟାଯ୍ୟା ବୃତ୍ତିଃ (ପ୍ରୀତିକର ଓ ନ୍ୟାୟମାର୍ଗରେ ଜୀବିକା ଅର୍ଜନ) ଅସୁଭଙ୍ଗେ ଅପି ମଳିନମ୍ ଅସୁକରମ୍ (ପ୍ରାଣ ଗଲେ ମଧ୍ୟ ନିନ୍ଦିତ କାର୍ଯ୍ୟରୁ ବିରତ ହେବା) ଉଚ୍ଚୈଃ ବିପଦି ସ୍ଥେୟଂ (ଘୋର ବିପଦରେ ଅଧୀର ନ ହେବା) ମହତାଂ ପଦମ୍ ଅନୁବିଧେୟଂ (ମହାଜନମାନଙ୍କ ପଦାଙ୍କ ଅନୁସରଣ କରିବା) ସତାଂ (ସାଧୁ, ସଜ୍ଜନମାନଙ୍କ ପାଇଁ) ଇଦଂ ବିଷମମ୍ ଅସିଧାରାବ୍ରତଂ (ଏହି କଠୋର ନୀତି ପାଳନ ପାଇଁ ଉପଦେଶ) କେନ ଉଦ୍ଦିଷ୍ଟମ୍ (କିଏ ଦେଇଛି ?)

ଅର୍ଥ—ସଜ୍ଜନମାନେ ଦୁଷ୍ଟକୁ ଅଭ୍ୟର୍ଥନା କରନ୍ତି ନାହିଁ କି ଧନହୀନ ବନ୍ଧୁକୁ ଧନ ମାଗନ୍ତି ନାହିଁ । ପ୍ରୀତିକର ଓ ନ୍ୟାୟମାର୍ଗରେ ଜୀବିକା ଅର୍ଜନ କରିବା ସଙ୍ଗେ ସଙ୍ଗେ ପ୍ରାଣଗଲେ ମଧ୍ୟ ନିନ୍ଦନୀୟ କର୍ମ କରନ୍ତି ନାହିଁ । ମହାବିପଦରେବି ଅଧୀର ହୁଅନ୍ତି ନାହିଁ । ସର୍ବଦା ମହାଜନମାନଙ୍କ ପଦାଙ୍କ ଅନୁସରଣ କରନ୍ତି । ସେମାନଙ୍କୁ କିଏ କେଉଁ ଉଦ୍ଦେଶ୍ୟରେ ଏହି ନୀତି ଉପଦେଶ ଦେଇଛି ?

କ୍ଷୁତ୍କ୍ଷାମୋଽପି ଜରାକୃଶୋଽପି ଶିଥିଳପ୍ରାଣୋଽପି କଷ୍ଟାଂ ଦଶା-
ମାପନ୍ନୋଽପି ବିପନ୍ନଦୀଧିତିରପି ପ୍ରାଣେଷୁ ନଶ୍ୟତ୍ସ୍ୱପି ।
ମତ୍ତେଭେନ୍ଦ୍ରବିଭିନ୍ନକୁମ୍ଭକବଳଗ୍ରାସୈକବଦ୍ଧସ୍ପୃହଃ
କିଂ ଜୀର୍ଣ୍ଣଂ ତୃଣମତ୍ତି ମାନମହତାମଗ୍ରେସରଃ କେଶରୀ ॥୨୯॥

ଅନ୍ୱୟ—ମତ୍ତେଭେନ୍ଦ୍ରବିଭିନ୍ନକୁମ୍ଭକବଳଗ୍ରାସୈକବଦ୍ଧସ୍ପୃହଃ (ହସ୍ତୀ ଗଣ୍ଡସ୍ଥଳ ବିଦାରଣ ପୂର୍ବକ ମାଂସ ଭକ୍ଷଣ ଅଭିଳାଷୀ) ମାନମହତାମ୍ ଅଗ୍ରେସରଃ (ଅଭିମାନୀମାନଙ୍କର ଅଗ୍ରଗଣ୍ୟ) କେଶରୀ (ସିଂହ) କ୍ଷୁତ୍କ୍ଷାମଃ ଅପି (କ୍ଷୁଧାରେ ଦୁର୍ବଳ) ଜରାକୃଶଃ ଅପି (ବାର୍ଦ୍ଧକ୍ୟ ହେତୁ କ୍ଷୀଣ) ଶିଥିଳପ୍ରାଣଃ ଅପି (ଦୁର୍ବଳ ପ୍ରାଣ) କଷ୍ଟାଂ ଦଶାମ୍ ଆପନ୍ନଃ ଅପି (କଷ୍ଟଦାୟକ ଅବସ୍ଥା ହେଲେ ମଧ୍ୟ)

ବିପନ୍ନଧାମ୍ନଃ ଅପି (ନିଜର ତେଜ କମିଗଲେ ମଧ୍ୟ) ପ୍ରାଣେଷୁ ନଶ୍ୟତ୍ସୁ ଅପି (ପ୍ରାଣ ଚାଲିଯାଉଥିଲେବି) କିଂ ଜୀର୍ଣ୍ଣଂ ତୃଣମ୍ ଅତ୍ତି (ଶୁଖିଲା ଘାସ ଖାଏ କି ?)

ଅର୍ଥ—ମଦମତ୍ତ ହସ୍ତୀର ଗଣ୍ଡସ୍ଥଳ ବିଦାରଣ କରି ତା'ର ମାଂସ ଭକ୍ଷଣରେ ଅଭିଳାଷୀ, ଅଭିମାନୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ପଶୁରାଜ ସିଂହ, କ୍ଷୁଧାରେ ଆତୁର ଓ ବାର୍ଦ୍ଧକ୍ୟହେତୁ ଦୁର୍ବଳ ହୋଇ, ପ୍ରାଣାନ୍ତକ କଷ୍ଟ ଭୋଗ-କରିବା ସଙ୍ଗେ ସଙ୍ଗେ ତେଜୋହୀନ ହୋଇ ପ୍ରାଣତ୍ୟାଗ କଲେ ମଧ୍ୟ କେବେହେଲେ ଶୁଖିଲା ଘାସ ଖାଏନାହିଁ ।

ସ୍ୱଳ୍ପଂ ସ୍ନାୟୁବସାବଶେଷମଳିନଂ ନିର୍ମାଂସମପ୍ୟସ୍ଥି ଗୋଃ<br>
ଶ୍ୱା ଲବ୍‌ଧ୍ୱା ପରିତୋଷମେତି ନ ତୁ ତତ୍ତସ୍ୟ କ୍ଷୁଧାଶାନ୍ତୟେ ।<br>
ସିଂହୋ ଜମ୍ବୁକମଙ୍କମାଗତମପି ତ୍ୟକ୍ତ୍ୱା ନିହନ୍ତି ଦ୍ୱିପଂ<br>
ସର୍ବଃ କୃଚ୍ଛ୍ରଗତୋଽପି ବାଞ୍ଛତି ଜନଃ ସତ୍ତ୍ୱାନୁରୂପଂ ଫଳମ୍ ॥୩୦॥

ଅନ୍ୱୟ—ଶ୍ୱା (କୁକୁର) ଗୋଃ (ଗୋରୁର) ସ୍ନାୟୁବସାବଶେଷମଳିନଂ (ସ୍ନାୟୁଲିପ୍ତ) ନିର୍ମାଂସଂ (ମାଂସହୀନ) ସ୍ୱଳ୍ପମ୍ ଅପି ଅସ୍ଥି ଲବ୍‌ଧ୍ୱା (ଟ୍ରେଙ୍ଗିଆ ହାଡ଼ ଖଣ୍ଡିଏ ପାଇ) ପରିତୋଷମ୍ ଏତି (ସନ୍ତୁଷ୍ଟ ହୁଏ) ତତ୍ ତସ୍ୟ କ୍ଷୁଧାଶାନ୍ତୟେ ନ (ତାହା ତା'ର କ୍ଷୁଧା ଶାନ୍ତ କରେ ନାହିଁ) ସିଂହଃ ଅଙ୍କମ୍ ଆଗତମ୍ ଅପି (ସିଂହ ନିଜର କୋଳକୁ ବା ଅତି ନିକଟକୁ ଆସିଥିଲେ ମଧ୍ୟ) ଜମ୍ବୁକଂ ତ୍ୟକ୍ତ୍ୱା (ଶୃଗାଳକୁ ଛାଡ଼ିଦେଇ) ଦ୍ୱିପଂ ନିହନ୍ତି (ହାତୀକୁ ଶିକାର କରେ) ସର୍ବଃଜନଃ (ସବୁଲୋକ) କୃଚ୍ଛ୍ରଗତଃ ଅପି (ଦୁଃଖରେ ଥିଲେ ମଧ୍ୟ) ସତ୍ତ୍ୱାନୁରୂପଂ ଫଳଂ ବାଞ୍ଛତି (ପୌରୁଷ ଅନୁରୂପ ଫଳ ଇଚ୍ଛାକରେ) ।

ଅର୍ଥ—କୁକୁର ଗୋରୁର ଲାଳଲିପ୍ତ ମାଂସହୀନ ଟ୍ରେଙ୍ଗିଆ ହାଡ଼ ଖଣ୍ଡିଏ ପାଇ ପରିତୃପ୍ତ ହୁଏ । କିନ୍ତୁ ସେଥିରେ ତା'ର କ୍ଷୁଧା ଦୂର ହୁଏନାହିଁ । ସିଂହ ନିଜ ପାଖକୁ ଆସିଥିବା ଶିଆଳକୁ ଛାଡ଼ି ହାତୀକୁ ଶିକାର କରେ । ତେଣୁ ଅତି ଦୁଃଖଦାୟକ ଅବସ୍ଥାରେ ଉପନୀତ ହେଲେ ମଧ୍ୟ ସମସ୍ତେ ନିଜର ପୌରୁଷ ଅନୁରୂପ ଫଳଭୋଗ ପାଇଁ ଇଚ୍ଛା କରନ୍ତି ।

ଲାଙ୍ଗୂଳଚାଳନମଧଶ୍ଚରଣାବପାତଂ
ଭୂମୌ ନିପତ୍ୟବଦନୋଦରଦର୍ଶନଂ ଚ ।
ଶ୍ୱା ପିଣ୍ଡଦସ୍ୟ କୁରୁତେ ଗଜପୁଙ୍ଗବସ୍ତୁ
ଧୀରଂ ବିଲୋକୟତି ଚାଟୂଶତୈଶ୍ଚ ଭୁଙ୍‌କ୍ତେ ॥୩୧॥

ଅନ୍ୱୟ—ଶ୍ୱା (କୁକୁର) ପିଣ୍ଡଦସ୍ୟ (ଖାଦ୍ୟଦାତାର) ଅଧଃ ଭୂମୌ ନିପତ୍ୟ (ପାଦତଳେ ପଡ଼ି) ଲାଂଗୁଳଚାଳନଂ (ଲାଂଗୁଳ ହଲାଇବା) ଚରଣୌ ଅବପାତଂ (ପାଦତଳେ ଗଡ଼ିବା) ବଦନୋଦରଦର୍ଶନଂ (ପାଟି ଓ ପେଟ ଦେଖାଇବା) କୁରୁତେ (କାର୍ଯ୍ୟକରେ) ତୁ (କିନ୍ତୁ) ଗଜପୁଙ୍ଗବଃ (ହାତୀ) ଧୀରଂ ବିଲୋକୟତି (ଧୀରେ ଚାହେଁ) ଚାଟୂଶତୈଃ ଚ ଭୁଙ୍‌କ୍ତେ (ବହୁତ କୁହାବୋଲା କଲାପରେ ଖାଏ) ।

ଅର୍ଥ—କୁକୁର ଖାଇବାକୁ ଦେଉଥିବା ବ୍ୟକ୍ତିର ପାଦତଳେ ପଡ଼ି ଲାଙ୍ଗୁଡ଼ ହଲାଏ, ତଳେ ଗଡ଼ି ପାଟି ଓ ପେଟ ଦେଖାଇଥାଏ । କିନ୍ତୁ ହାତୀ ଖାଇବାକୁ ଦେଉଥିବା ବ୍ୟକ୍ତିକୁ ଧୀରେ ଧୀରେ ଚାହେଁ ଏବଂ ସ୍ନେହରେ ବହୁତ କହିବା ପରେ ଖାଏ ।

ସନ୍ତ୍ୟନ୍ୟେଽପି ବୃହସ୍ପତିପ୍ରଭୃତୟଃ ସମ୍ଭାବିତାଃ ପଞ୍ଚଷା-
ସ୍ତାନ୍‌ପ୍ରତ୍ୟେଷ ବିଶେଷବିକ୍ରମରୁଚୀ ରାହୁର୍ନ ବୈରାୟତେ ।
ଦ୍ୱାବେବ ଗ୍ରସତେ ଦିନେଶ୍ୱରନିଶାପ୍ରାଣେଶ୍ୱରୌ ଭାସୁରୌ
ଭ୍ରାତଃ ପର୍ବଣି ପଶ୍ୟ ଦାନବପତିଃ ଶୀର୍ଷାବଶେଷୀକୃତଃ ॥୩୨॥

ଅନ୍ୱୟ – ଭ୍ରାତଃ (ହେ ଭାଇ) ପଶ୍ୟ (ଦେଖ) ବୃହସ୍ପତିପ୍ରଭୃତୟଃ (ବୃହସ୍ପତି ପ୍ରଭୃତି) ଅନ୍ୟେ ଅପି ପଞ୍ଚଷାଃ (ଅନ୍ୟ ପାଞ୍ଚ ଛଅଟି) ସମ୍ଭାବିତାଃ ସନ୍ତି (ପ୍ରତିଷ୍ଠିତ ଗ୍ରହ ଅଛନ୍ତି) ଶୀର୍ଷାବଶେଷୀକୃତଃ (ମସ୍ତକମାତ୍ର ଅବଶେଷ ଥିବା) ବିଶେଷବିକ୍ରମରୁଚୀ ଦାନବପତିଃ (ବିଶେଷ ପରାକ୍ରମଶାଳୀ ରାକ୍ଷସରାଜ) ଏଷଃ ରାହୁଃ (ଏହି ରାହୁ) ତାନ୍ ପ୍ରତି ନ ବୈରାୟତେ (ସେମାନଙ୍କ ପ୍ରତି ଶତ୍ରୁତା ଆଚରଣ କରେନାହିଁ), ପରନ୍ତୁ ଭାସୁରୌ (ଉଜ୍ଜ୍ୱଳ) ଦିନେଶ୍ୱର

ନିଶାପ୍ରାଣେଶ୍ୱରୌ (ସୂର୍ଯ୍ୟ ଓ ଚନ୍ଦ୍ର) ଦ୍ୱୌ ଏବ (ଦୁହିଁଙ୍କୁ ହିଁ) ଗ୍ରସତେ (ଗ୍ରାସକରେ) ।

ଅର୍ଥ—ହେ ଭାଇ ! ଦେଖ, ବୃହସ୍ପତି ପ୍ରଭୃତି ଅନ୍ୟ ପାଞ୍ଚ ଛଅଟି ବଡ଼ ଗ୍ରହ ଥିଲେ ମଧ୍ୟ ମସ୍ତକାବଶେଷ ଆକୃତି, ପ୍ରବଳ ପରାକ୍ରମଶାଳୀ ରାକ୍ଷସରାଜ ରାହୁ ସେମାନଙ୍କ ପ୍ରତି ଶତ୍ରୁତା ଆଚରଣ କରେ ନାହିଁ । କିନ୍ତୁ ସେ ତେଜସ୍ୱୀ ଗ୍ରହ ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ କେବଳ ଗ୍ରାସକରେ । ତେଣୁ ବଳବାନ୍ ବ୍ୟକ୍ତି ଦୁର୍ଦ୍ଦଶାଗ୍ରସ୍ତ ହେଲେ ମଧ୍ୟ ବଳବାନ୍ ବ୍ୟକ୍ତିକୁ ହିଁ ଆକ୍ରମଣ କରିଥାଏ ।

ବହତି ଭୁବନଶ୍ରେଣୀଂ ଶେଷଃ ଫଣାଫଳକସ୍ଥିତାଂ
କମଠପତିନା ମଧ୍ୟେ ପୃଷ୍ଠଂ ସଦା ସ ବିଧାର୍ଯ୍ୟତେ ।
ତମପି କୁରୁତେ କ୍ରୋଡ଼ାଧୀନଂ ପୟୋଧିରନାଦରା-
ଦହହ ମହତାଂ ନିଃସୀମାନଶ୍ଚରିତ୍ରବିଭୂତୟଃ ॥୩୩॥

ଅନ୍ୱୟ—ଶେଷଃ (ବାସୁକି) ଭୁବନଶ୍ରେଣୀଂ (ପୃଥିବୀକୁ) ଫଣାଫଳକସ୍ଥିତାଂ ବହତି (ନିଜ ଫଣା ଉପରେ ବହନ କରିଛନ୍ତି) କମଠପତିନା (କୂର୍ମରାଜ) ମଧ୍ୟେ ପୃଷ୍ଠଂ (ନିଜ ପିଠିରେ) ସଦା ସ ବିଧାର୍ଯ୍ୟତେ (ସର୍ବଦା ବାସୁକିକୁ ଧାରଣ କରିଛନ୍ତି) ପୟୋଧିଃ (ସାଗର) ଅନାଦରାତ୍ (ଅବହେଳା-କ୍ରମେ) ତମ୍ ଅପି (କୂର୍ମଙ୍କୁ ମଧ୍ୟ) କ୍ରୋଡ଼ାଧୀନଂ କୁରୁତେ (ନିଜ କୋଳରେ ରଖିପାରିଛନ୍ତି) ଅହହ (ଆଶ୍ଚର୍ଯ୍ୟ) ମହତାଂ ଚରିତ୍ର ବିଭୂତୟଃ (ମହାପୁରୁଷ-ମାନଙ୍କ ଚରିତ୍ର ବୈଭବ) ନିଃସୀମାନଃ (ଅପରିସୀମ) ।

ଅର୍ଥ—ଶେଷଦେବ ବାସୁକି ନିଜ ଫଣା ଉପରେ ପୃଥିବୀକୁ ଏବଂ କୂର୍ମରାଜ ନିଜ ପିଠିରେ ବାସୁକିକୁ ସର୍ବଦା ଧାରଣ କରିଛନ୍ତି । ସାଗର ଅବହେଳାକ୍ରମେ ସେହି କୂର୍ମରାଜଙ୍କୁ ନିଜ କୋଳରେ ରଖିପାରିଛନ୍ତି । ତେଣୁ ମହାପୁରୁଷମାନଙ୍କ ଅପରିମିତ ଚାରିତ୍ରିକ ଐଶ୍ୱର୍ଯ୍ୟ କଥା ବିଚାର କଲେ ଆଶ୍ଚର୍ଯ୍ୟ ନହୋଇ ରହିହେବନାହିଁ ।

ବରଂ ପକ୍ଷଚ୍ଛେଦଃ ସମଦମଘବନ୍ମୁକ୍ତକୁଳିଶ-
ପ୍ରହାରୈରୁଦ୍‌ଗଚ୍ଛଦ୍‌ବହଳଦହନୋଦ୍‌ଗାରଗୁରୁଭିଃ ।
ତୁଷାରାଦ୍ରେଃ ସୂନୋରହହପିତରି କ୍ଳେଶବିବଶେ
ନ ଚାସୌ ସମ୍ପାତଃ ପୟସି ପୟସାଂ ପତ୍ୟୁରୁଚିତଃ ॥୩୪॥

ଅନ୍ୱୟ—ଉଦ୍‌ଗଚ୍ଛଦ୍‌ବହଳଦହନୋଦ୍‌ଗାରଗୁରୁଭିଃ (ଅତ୍ୟଧିକ ଉତ୍କଟ ଅଗ୍ନିବର୍ଷଣଶୀଳ) ସମଦମଘବନ୍ମୁକ୍ତକୁଳିଶପ୍ରହାରୈଃ (କ୍ରୋଧୋନ୍ମତ୍ତ ଇନ୍ଦ୍ରଙ୍କ ପ୍ରେରିତ ବଜ୍ରପ୍ରହାରଦ୍ୱାରା) ତୁଷାରାଦ୍ରେଃ (ହିମାଳୟଙ୍କ) ସୂନୋଃ (ପୁତ୍ର ମୈନାକର) ପକ୍ଷଚ୍ଛେଦଃ ବରଂ (ପକ୍ଷ ଛିନ୍ନ ହେବା ଶ୍ରେୟସ୍କର) ଅହହ (ଦୁଃଖଦ୍ୟୋତକ) ପିତରି କ୍ଳେଶବିବଶେ (ପିତା ହିମାଳୟ କଷ୍ଟ ପାଉଥିବାବେଳେ) ପୟସାଂ ପତ୍ୟୁଃ (ଜଳାଧିପତିଙ୍କ) ପୟସି (ଜଳରେ) ଅସୌ ସମ୍ପାତଃ (ତାଙ୍କର ପତନ) ନ ଉଚିତ (ଉଚିତ ନୁହେଁ) ।

ଅର୍ଥ—କ୍ରୋଧୋନ୍ମତ୍ତ ଦେବରାଜ ଇନ୍ଦ୍ରଙ୍କ ପ୍ରେରିତ ଉତ୍କଟ ଅଗ୍ନିବର୍ଷୀ ବଜ୍ରର ଆଘାତରେ ହିମାଳୟଙ୍କ ପୁତ୍ର ମୈନାକର ପକ୍ଷଚ୍ଛେଦ ହୋଇଥିଲେ ଭଲହୋଇଥାନ୍ତା । କିନ୍ତୁ ଦୁଃଖର କଥା, ବଜ୍ରର ଆଘାତରେ ପିତା କଷ୍ଟ ଅନୁଭବ କରୁଥିବାବେଳେ ତାଙ୍କର ଜଳାଧିପତି ସମୁଦ୍ର ଜଳରେ ଲୁଚି ରହିବା ଉଚିତ ହେଲ ନାହିଁ ।

ଯଦଚେତନୋଽପି ପାଦୈଃ ସ୍ପୃଷ୍ଟଃ
ପ୍ରଜ୍ୱଳତି ସବିତୁରିନକାନ୍ତଃ ।
ତତ୍ତେଜସ୍ୱୀ ପୁରୁଷଃ ପରକୃତବିକୃତିଂ କଥଂ ସହତେ ॥୩୫॥

ଅନ୍ୱୟ—ଅଚେତନଃ ଅପି (ନିର୍ଜୀବ ହେଲେ ମଧ୍ୟ) ଇନକାନ୍ତଃ (ସୂର୍ଯ୍ୟକାନ୍ତ ମଣି) ସବିତୁଃ (ସୂର୍ଯ୍ୟଙ୍କର) ପାଦୈଃ (କିରଣଦ୍ୱାରା) ସ୍ପୃଷ୍ଟଃ (ସ୍ପର୍ଶିତ ହୋଇ) ଯତ୍ ଜ୍ୱଳତି (ଯଦି ଜଳିଉଠୁଛି) ତତ୍ (ତେବେ) ତେଜସ୍ୱୀ ପୁରୁଷଃ (ସଚେତନ ତେଜୋବାନ୍ ପୁରୁଷ) ପରକୃତ ବିକୃତିଂ (ଅନ୍ୟର ଅପମାନନାକୁ) କଥଂ ସହତେ (କିପରି ସହ୍ୟ କରିବ) ।

ଅର୍ଥ—ସୂର୍ଯ୍ୟକାନ୍ତ ମଣି ଜଡ଼ବସ୍ତୁ ହେଲେବି ସୂର୍ଯ୍ୟଙ୍କ କିରଣ ସ୍ପର୍ଶ ପାଇବାମାତ୍ରେ ଯଦି ଜଳି ଉଠୁଛି, ତେବେ ସଚେତନ ତେଜସ୍ୱୀ ପୁରୁଷ ଅନ୍ୟମାନଙ୍କର ଅପମାନକୁ କିପରି ସହିପାରିବ ?

ସିଂହଃ ଶିଶୁରପି ନିପତତି ମଦମଳିନ-
କପୋଳଭିତ୍ତିଷୁ ଗଜେଷୁ ।
ପ୍ରକୃତିରିୟଂ ସତ୍ତ୍ୱବତାଂ ନ ଖଳୁ ବୟସ୍ତେଜସୋ ହେତୁଃ ।।୩୭।।

ଅନ୍ୱୟ—ସିଂହଃ ଶିଶୁଃ ଅପି (ସିଂହ ଶିଶୁ ଅବସ୍ଥାରେ ମଧ୍ୟ) ମଦମଳିନ-କପୋଳଭିତ୍ତିଷୁ ଗଜେଷୁ (ମଦଜଳ ସ୍ରାବରେ ମଳିନ ଗଣ୍ଡସ୍ଥଳ ହୋଇଥିବା ହାତୀ ଉପରେ) ନିପତତି (ଆକ୍ରମଣ କରେ) ସତ୍ତ୍ୱବତାଂ ଖଳୁ (ଶକ୍ତିଶାଳୀ-ମାନଙ୍କରହିଁ) ଇୟଂ ପ୍ରକୃତିଃ (ଏହି ସ୍ୱଭାବ) ବୟଃ (ବୟସ) ତେଜସଃ (ତେଜର) ନ ହେତୁଃ (କାରଣ ନୁହେଁ) ।

ଅର୍ଥ—ସିଂହ ଶିଶୁ ଅବସ୍ଥାରେ ମଧ୍ୟ ମଦଜଳସ୍ରାବରେ ମଳିନ ଗଣ୍ଡସ୍ଥଳ-ଯୁକ୍ତ ଅର୍ଥାତ୍ ମଦମତ୍ତ ହସ୍ତୀମାନଙ୍କ ଉପରେ ଆକ୍ରମଣ କରେ । କାରଣ, ଶକ୍ତି ଓ ସାହସ ଥିବା ପ୍ରାଣୀର ଏହାହିଁ ସ୍ୱାଭାବିକ ପ୍ରକୃତି । ତେଣୁ ବୟସକୁ ତେଜର କାରଣ ବୋଲି କହିବା ଠିକ୍ ନୁହେଁ ।

ସ ଜାତୋ ଯେନ ଜାତେନ ଯାତି ବଂଶଃ ସମୁନ୍ନତିମ୍ ।
ପରିବର୍ତ୍ତିନି ସଂସାରେ ମୃତଃ କୋ ବା ନ ଜାୟତେ ।।୩୮।।

ଅନ୍ୱୟ ପରିବର୍ତ୍ତିନି (ପରିବର୍ତ୍ତନଶୀଳ) ସଂସାରେ (ଏହି ସଂସାରରେ) କଃ ବା (କିଏ ବା) ମୃତଃ ନ ଜାୟତେ (ମରେ ନାହିଁ) ସଃ ଜାତଃ (ସେ ଜନ୍ମ ହୁଏ) ଯେନ ଜାତେନ (ଯେ ଜନ୍ମ ହେବାଦ୍ୱାରା) ବଂଶଃ (କୁଳ) ସମୁନ୍ନତିଂ ଯାତି (ସମୁନ୍ନତ ହୁଏ, ସମୃଦ୍ଧ ହୁଏ) ।

ଅର୍ଥ—ପରିବର୍ତ୍ତନଶୀଳ ସଂସାରରେ ଜନ୍ମ ହୋଇ କିଏ ବା ମୃତ୍ୟୁବରଣ ନକରେ ? ଜନ୍ମହୋଇ ସମସ୍ତେ ମୃତ୍ୟୁବରଣ କରନ୍ତି । କିନ୍ତୁ ସେହି ବ୍ୟକ୍ତିର

ଜନ୍ମ ସଫଳ ହୁଏ, ଯେ ଜନ୍ମ ହେବାଦ୍ୱାରା କୁଳ ବା ଦେଶର ଉନ୍ନତି ଓ ଖ୍ୟାତି ବୃଦ୍ଧି ପାଏ ।

କୁସୁମସ୍ତବକସ୍ୟେବ ଦ୍ୱେ ଗତୀ ସ୍ତୋ ମନସ୍ୱିନାମ୍ ।
ମୂର୍ଦ୍ଧ୍ନି ବା ସର୍ବଲୋକସ୍ୟ ଶୀର୍ଯ୍ୟେତ ବନେଽଥ ବା ॥୩୮॥

ଅନ୍ୱୟ—ମନସ୍ୱିନାଂ (ଉଚ୍ଚମନା ବ୍ୟକ୍ତିମାନଙ୍କର) କୁସୁମସ୍ତବକସ୍ୟ (ଫୁଲପେଣ୍ଡାର) ଗତୀ ଇବ (ଅବସ୍ଥା ପରି) ଦ୍ୱେ (ଦୁଇପ୍ରକାର ଅବସ୍ଥା) ସ୍ତଃ (ହୁଏ) ସର୍ବଲୋକସ୍ୟ ମୂର୍ଦ୍ଧ୍ନି (ସମସ୍ତଙ୍କ ମୁଣ୍ଡରେ) ଅଥବା (ଅଥବା) ବନେ (ବନରେ) ଶୀର୍ଯ୍ୟେତ (ଝଡ଼ିପଡ଼େ) ।

ଅର୍ଥ—ଫୁଲପେଣ୍ଡା ପରି ଉଚ୍ଚମନା ବ୍ୟକ୍ତିମାନଙ୍କର ଦୁଇଟି ଅବସ୍ଥା ଘଟେ । ଫୁଲପେଣ୍ଡା ଯେପରି ସମସ୍ତଙ୍କ ମୁଣ୍ଡରେ ସ୍ଥାନ ପାଏ ନୋହିଲେ ବଣରେ ଥାଇ ମଉଳି ଝଡ଼ିପଡ଼େ, ସେହିପରି ମନସ୍ୱୀ ବ୍ୟକ୍ତି ସମସ୍ତଙ୍କ ଦ୍ୱାରା ଆଦୃତ ହୁଏ, ନୋହିଲେ ଏକାକୀ ରହି ମୃତ୍ୟୁବରଣକରେ ।

ଜାତିର୍ଯାତୁ ରସାତଳଂ ଗୁଣଗଣସ୍ତସ୍ୟାପ୍ୟଧୋ ଗଚ୍ଛତା-
ଚ୍ଛୀଳଂ ଶୈଳତଟାତ୍ପତତ୍ୱଭିଜନଃ ସନ୍ଦହ୍ୟତାଂ ବହ୍ନିନା ।
ଶୌର୍ଯ୍ୟେ ବୈରିଣି ବଜ୍ରମାଶୁ ନିପତତ୍ୱର୍ଥୋଽସ୍ତୁ ନଃ କେବଳଂ
ଯେନୈକେନ ବିନା ଗୁଣାସ୍ତୃଣଲବପ୍ରାୟାଃ ସମସ୍ତାଇମେ ॥୩୯॥

ଅନ୍ୱୟ—ଜାତିଃ ରସାତଳଂ ଯାତୁ (ଜାତି ରସାତଳକୁ ଯାଉ) ଗୁଣଗଣଃ (ଗୁଣସମୂହ) ତସ୍ୟ ଅପି ଅଧଃ (ତା'ଠାରୁ ତଳକୁ) ଗଚ୍ଛତାଂ (ଯାଉ) ଶୀଳଂ (ସୁସ୍ୱଭାବ) ଶୈଳତଟାତ୍ (ପାହାଡ଼ରୁ ତଳକୁ) ପତତୁ (ପଡ଼ିଯାଉ) ଅଭିଜନଃ (ସ୍ୱଜନବନ୍ଧୁବର୍ଗ) ବହ୍ନିନା (ନିଆଁରେ) ସନ୍ଦହ୍ୟତାଂ (ପୋଡ଼ିଯାଆନ୍ତୁ) ଶୌର୍ଯ୍ୟେ ବୈରିଣି (ଶୌର୍ଯ୍ୟ ରୂପକ ଶତ୍ରୁ ଉପରେ) ଆଶୁ (ଶୀଘ୍ର) ବଜ୍ରଂ ନିପତତୁ (ବଜ୍ର ପଡ଼ୁ) ନଃ (ଆମର) କେବଳମ୍ ଅର୍ଥଃ ଅସ୍ତୁ (ଧନ ସମ୍ପଦ ଲାଭ ହେଉ) ଯେନ ଏକେନ ବିନା (ଯେଉଁ ଗୋଟିକ ବିନା) ଇମେ ସମସ୍ତାଃ ଗୁଣାଃ (ଏହି ସମସ୍ତ ଗୁଣ) ତୃଣଲବପ୍ରାୟାଃ (ତୃଣ ପରି ହେଯ୍ୟ) ।

ଅର୍ଥ—ପ୍ରଜାତି ରସାତଳକୁ ଯାଉ, ତା'ତଳକୁ ସଦ୍‌ଗୁଣସବୁ ଯାଉ, ପର୍ବତ ପରି ଉଚ୍ଚରୁ ସମ୍ଭ୍ରବ ତଳକୁ ପଡ଼ିଯାଉ, କୁଳ ନିଆଁରେ ଧ୍ୱଂସ ହେଉ, ଶୌର୍ଯ୍ୟ ରୂପକ ଶତ୍ରୁ ଉପରେ ବଜ୍ର ପଡ଼ୁ ପଛକେ ଆମକୁ କେବଳ ଧନମିଳୁ । କାରଣ ସେହି ଏକମାତ୍ର ଧନ ବ୍ୟତୀତ ଅନ୍ୟ ସମସ୍ତେ ତୃଣ ସଦୃଶ ହେଉ ମନେହୁଅନ୍ତି । ଧନଲୋଭୀ ବ୍ୟକ୍ତିର ଏହାହିଁ ଆନ୍ତରିକ କାମନା ।

ଦୌର୍ମନ୍ତ୍ର୍ୟାନ୍ନୃପତିର୍ବିନଶ୍ୟତି ଯତିଃ ସଙ୍ଗାତ୍ସୁତୋ ଲାଳନା-
ଦ୍ୱିପ୍ରୋଽନଧ୍ୟୟନାତ୍କୁଳଂ କୁତନୟାଚ୍ଛୀଳଂ ଖଳୋପାସନାତ୍ ।
ହ୍ରୀର୍ମଦ୍ୟାଦନବେକ୍ଷଣାଦପି କୃଷିଃ ସ୍ନେହଃ ପ୍ରବାସାଶ୍ରୟାନ୍
ମୈତ୍ରୀ ଚାପ୍ରଣୟାତ୍ସମୃଦ୍ଧିରନୟାତ୍ତ୍ୟାଗପ୍ରମାଦାଦ୍ଧନମ୍ ॥୪୦॥

ଅନ୍ୱୟ—ଦୌର୍ମନ୍ତ୍ର୍ୟାତ୍ (ଦୁଷ୍ଟ ମନ୍ତ୍ରୀ ଓ ମନ୍ତ୍ରଣା ହେତୁ) ନୃପତିଃ ବିନଶ୍ୟତି (ରାଜା ନଷ୍ଟ ହୁଅନ୍ତି) ସଙ୍ଗାତ୍ ଯତିଃ (ବିଷୟ ସଂସର୍ଗ ଦୋଷରୁ ସନ୍ନ୍ୟାସୀ) ଲାଳନାତ୍ ସୁତଃ (ଅଧିକ ସ୍ନେହହେତୁ ପୁଅ) ଅନଧ୍ୟୟନାତ୍ ବିପ୍ରଃ (ଅଧ୍ୟୟନ ନ କରିବାରୁ ବ୍ରାହ୍ମଣ) କୁତନୟାତ୍ କୁଳଂ (କୁପୁତ୍ର ହେତୁ ବଂଶ) ଖଳୋପାସନାତ୍ ଶୀଳଂ (ମୂର୍ଖ ସେବାରୁ ସ୍ୱଭାବ) ମଦ୍ୟାତ୍ ହ୍ରୀଃ (ମଦ୍ୟପାନ ହେତୁ ଲଜ୍ଜା) ଅନବେକ୍ଷଣାତ୍ ଅପି କୃଷିଃ (ଦେଖାଦେଖି ନକଲେ ଚାଷ) ପ୍ରବାସାଶ୍ରୟାତ୍ ସ୍ନେହଃ (ବିଦେଶରେ ରହିଲେ ସ୍ନେହ) ଅପ୍ରଣୟାତ୍ ଚ ମୈତ୍ରୀ (ପ୍ରୀତି ଅଭାବରୁ ମିତ୍ରତା) ଅନୟାତ୍ ସମୃଦ୍ଧିଃ (ଅନ୍ୟାୟ ହେତୁ ଉନ୍ନତି) ତ୍ୟାଗପ୍ରମାଦାତ୍ ଧନଂ (ଅବିଗୃରିତ ଭାବେ ଦାନ କରିବା ହେତୁ ଧନ ନଷ୍ଟ ହୁଏ) ।

ଅର୍ଥ—ଦୁଷ୍ଟ ମନ୍ତ୍ରୀଙ୍କ ଯୋଗୁଁ ରାଜାଙ୍କର ଯେପରି ବିନାଶ ଘଟେ, ସେହିପରି ବିଷୟାସକ୍ତ ଯତି, ଅଧିକ ସ୍ନେହହେତୁ ପୁତ୍ର, ଅଧ୍ୟୟନ ବିନା ବିପ୍ର, କୁପୁତ୍ର ଦ୍ୱାରା ବଂଶ, ମୂର୍ଖସଂସର୍ଗରୁ ସ୍ୱଭାବ, ମଦ୍ୟପାନହେତୁ ଲଜ୍ଜା, ଦେଖାଶୁଣା ନକଲେ ଚାଷ, ବିଦେଶରେ ରହିଲେ ସ୍ନେହ, ପ୍ରୀତି ଅଭାବରେ ମିତ୍ରତା, ଅନ୍ୟାୟଦ୍ୱାରା ସମ୍ପଦ ଓ ପାତ୍ରାପାତ୍ର ବିଚାର ନକରି ଦାନ କଲେ ଧନ ନଷ୍ଟହୁଏ ।

ତାନୀନ୍ଦ୍ରିୟାଣି ସକଳାନି ତଦେବ କର୍ମ
ସା ବୁଦ୍ଧିରପ୍ରତିହତା ବଚନଂ ତଦେବ ।
ଅର୍ଥୋଷ୍ମଣା ବିରହିତଃ ପୁରୁଷଃ ସ ଏବ
ତ୍ୱନ୍ୟଃ କ୍ଷଣେନ ଭବତୀତି ବିଚିତ୍ରମେତତ୍ ॥୪୧॥

ଅନ୍ୱୟ—ତାନି ସକଳାନି ଇନ୍ଦ୍ରିୟାଣି (ସେହି ସବୁ ଇନ୍ଦ୍ରିୟ) ତତ୍ ଏବ କର୍ମ (ସେହି କାର୍ଯ୍ୟ) ସା ଅପ୍ରତିହତା ବୁଦ୍ଧିଃ (ସେହି ବାଧାରହିତ ବୁଦ୍ଧି ବା ବିଚାର) ତତ୍ ଏବ ବଚନଂ (ସେହି କଥାବାର୍ତ୍ତା) ସ ଏବ ପୁରୁଷଃ (ସେହି ବ୍ୟକ୍ତି) ତୁ (କିନ୍ତୁ) କ୍ଷଣେନ (ଅଳ୍ପ ସମୟ ମଧ୍ୟରେ) ଅର୍ଥୋଷ୍ମଣା (ଅର୍ଥ ରୂପକ ଉଷ୍ମା) ବିରହିତଃ (ରହିତ ହୋଇ) ଅନ୍ୟଃ ଭବତି ଇତି (ଅନ୍ୟପ୍ରକାର ହୁଏ) ଏତତ୍ ବିଚିତ୍ରମ୍ (ଏହାହିଁ ବିଚିତ୍ର) ।

ଅର୍ଥ—ଧନସମ୍ପଦ ଥିବାବେଳେ ବ୍ୟକ୍ତିର ଇନ୍ଦ୍ରିୟ, କର୍ମ, ବୁଦ୍ଧି, ବଚନ ସବୁକିଛି ଠିକ୍ ଥାଏ । କିନ୍ତୁ ଧନଶୂନ୍ୟ ହୋଇଗଲେ ସେହି ବ୍ୟକ୍ତି କ୍ଷଣକ ମଧ୍ୟରେ ଅନ୍ୟପ୍ରକାର ବିବେଚିତ ହୁଏ । ସଂସାରରେ ଏହାହିଁ ସବୁଠାରୁ ବିଚିତ୍ର ।

ଯସ୍ୟାସ୍ତି ବିତ୍ତଂ ସ ନରଃ କୁଳୀନଃ
ସ ପଣ୍ଡିତଃ ସ ଶ୍ରୁତବାନ୍ ଗୁଣଜ୍ଞଃ ।
ସ ଏବ ବକ୍ତା ସ ଚ ଦର୍ଶନୀୟଃ
ସର୍ବେ ଗୁଣାଃ କାଞ୍ଚନମାଶ୍ରୟନ୍ତି ॥୪୨॥

ଅନ୍ୱୟ—ଯସ୍ୟ ବିତ୍ତମ୍ ଅସ୍ତି (ଯାହାର ଧନ ଅଛି) ସଃ ନରଃ କୁଳୀନଃ (ସେ ସଦ୍‌ବଂଶଜ) ସଃ ପଣ୍ଡିତଃ (ସେ ପଣ୍ଡିତ) ସଃ ଶ୍ରୁତବାନ୍ (ସେ ଶାସ୍ତ୍ରଜ୍ଞ) ଗୁଣଜ୍ଞଃ (ଗୁଣ ଚିହ୍ନିବା ବ୍ୟକ୍ତି) ସଃ ଏବ ବକ୍ତା (ସେହିଁ କହିବାବାଲା) ସଃ ଚ ଦର୍ଶନୀୟଃ (ସେ ମଧ୍ୟ ସୁନ୍ଦର) ସର୍ବେ ଗୁଣାଃ (ସମସ୍ତ ସୁଗୁଣ) କାଞ୍ଚନଂ (ସୁନା ବା ଧନକୁ) ଆଶ୍ରୟନ୍ତି (ଆଶ୍ରୟ କରନ୍ତି) ।

ଅର୍ଥ—ଯାହାର ଧନ ଅଛି, ସେ ଅକୁଳୀନ, ମୂର୍ଖ, ଶାସ୍ତ୍ର ବିଷୟରେ ଅଜ୍ଞ, ଦୋଷଦର୍ଶୀ, କୁବକ୍ତା ଓ ଅସୁନ୍ଦର ହୋଇଥିଲେ ମଧ୍ୟ ସମାଜରେ କୁଳୀନ (ସଦ୍‌ବଂଶଜ), ପଣ୍ଡିତ, ଶାସ୍ତ୍ରବିତ୍, ଗୁଣଜ୍ଞ, ସୁବକ୍ତା ଓ ସୁଦର୍ଶନ ବୋଲି ବିବେଚିତ ହୁଅନ୍ତି । ତେଣୁ ବ୍ୟକ୍ତିର ସମସ୍ତ ସୁଗୁଣ କାଞ୍ଚନକୁ (ଧନ) ଆଶ୍ରୟ କରି ରହିଥିବା ଏଥିରୁ ପ୍ରମାଣିତ ହୁଏ ।

ମଣିଃ ଶାଣୋଲ୍ଲୀଢ଼ଃ ସମରବିଜୟୀ ହେତିନିହତୋ
ମଦକ୍ଷୀଣୋ ନାଗଃ ଶରଦି ସରିତଃ ଶ୍ୟାନପୁଲିନାଃ ।
କଳାଶେଷଶ୍ଚନ୍ଦ୍ରଃ ସୁରତମୃଦିତା ବାଳଲଳନା
ତନିମ୍ନା ଶୋଭନ୍ତେ ଗଳିତବିଭବାଶ୍ଚାର୍ଥିଷୁ ନୃପାଃ ॥୪୩॥

ଅନ୍ୱୟ—ଶାଣୋଲ୍ଲୀଢ଼ଃ ମଣିଃ (ଶାଣଦିଆ ମଣି) ହେତିନିହତଃ (ଶସ୍ତ୍ରାଘାତ କଳେବର) ସମରବିଜୟୀ (ଯୁଦ୍ଧବିଜୟୀ) ମଦକ୍ଷୀଣଃ ନାଗଃ (ମଦଜଳକ୍ଷୀଣ ହାତୀ) ଶରଦି ଶ୍ୟାନପୁଲିନାଃ (ଶରତ୍‌କାଳରେ ଜଳ ଶୁଖିଯିବା ହେତୁ କୂଳ ଦେଖାଯାଉଥିବା) ସରିତଃ (ନଦୀ) କଳାଶେଷଃ ଚନ୍ଦ୍ରଃ (ଏକକଳା ଅବଶିଷ୍ଟ ଚନ୍ଦ୍ର) ସୁରତମୃଦିତା ବାଳଲଳନା (ସୁରତ ମଥିତା ବାଳା ସ୍ତ୍ରୀ) ଅର୍ଥିଷୁ (ପ୍ରାର୍ଥୀମାନଙ୍କଠାରେ) ଗଳିତବିଭବାଃ ନୃପାଃ ଚ (ଧନହୀନ ହୋଇଥିବା ରାଜା ମଧ୍ୟ) ତନିମ୍ନା ଶୋଭନ୍ତେ (ଦୁର୍ବଳତା ଦ୍ୱାରା ଶୋଭିତ ହୁଅନ୍ତି) ।

ଅର୍ଥ—ଶାଣଦିଆ ମଣି, ଶସ୍ତ୍ରରେ କ୍ଷତବିକ୍ଷତ ଯୁଦ୍ଧବିଜୟୀ ବୀର, ମଦଜଳକ୍ଷୀଣ ହାତୀ, ଶରତ୍‌କାଳରେ କ୍ଷୀଣ ଜଳଧାରା ହେତୁ କୂଳ ଦେଖାଯାଉଥିବା ନଦୀ, କଳାଏମାତ୍ର ଅବଶେଷ ଥିବା ଚନ୍ଦ୍ର, ସୁରତମଥିତା ବାଳା ସ୍ତ୍ରୀ ଓ ଅତ୍ୟଧିକ ଦାନ ଦେଇ ଦରିଦ୍ର ହୋଇପଡ଼ିଥିବା ରାଜା· ନିଜର କ୍ଷୀଣତାଦ୍ୱାରା ଶୋଭିତ ହୁଅନ୍ତି ।

ପରିକ୍ଷୀଣଃ କଶ୍ଚିତ୍ ସ୍ପୃହୟତି ଯବାନାଂ ପ୍ରସୃତୟେ
ସ ପଶ୍ଚାତ୍ସମ୍ପୂର୍ଣ୍ଣଃ କଳୟତି ଧରିତ୍ରୀଂ ତୃଣସମାମ୍ ।

ଅତସ୍ତାନୈକାନ୍ତ୍ୟାଦ୍‌ଗୁରୁଲଘୁତୟାର୍ଥେଷୁ ଧନିନା-
ମବସ୍ଥା ବସ୍ତୂନି ପ୍ରଥୟତି ଚ ସଂକୋଚୟତି ଚ ॥୪୮॥

ଅନ୍ୱୟ—ପରିକ୍ଷୀଣଃ କଃ ଚିତ୍ (କୌଣସି ଧନହୀନ) ଯବାନାଂ ପ୍ରସୃତୟେ (ପ୍ରଥମେ ପୋଷେ ଯବଧାନ ପାଇଁ) ସ୍ପୃହୟତି (ଇଚ୍ଛାକରେ) ପଶ୍ଚାତ୍ (ପରେ) ସଃ ସମ୍ପୂର୍ଣ୍ଣଃ (ସେ ଧନସମ୍ପଦରେ ପରିପୂର୍ଣ୍ଣ ହୋଇ) ଧରିତ୍ରୀଂ (ପୃଥିବୀକୁ) ତୃଣସମାଂ କଲୟତି (ତୃଣବତ୍ ହେୟ ମନେକରେ) ଅତଃ ଚ (ଏଣୁ) ଅନୈକାନ୍ତ୍ୟାତ୍ (ଏକପ୍ରକାର ସ୍ଥିତିର ଅଭାବ ହେତୁ) ଅର୍ଥେଷୁ (ପ୍ରୟୋଜନ-କ୍ଷେତ୍ରରେ) ଗୁରୁଲଘୁତୟା (ଗୁରୁ ଲଘୁ ବିଚାର କରି) ଧନିନାମ୍ ଅବସ୍ଥା (ଧନୀମାନଙ୍କ ଅବସ୍ଥା) ବସ୍ତୂନି (ଜିନିଷପତ୍ର) ପ୍ରଥୟତି (ବିସ୍ତାର କରେ) ସଂକୋଚୟତି ଚ (ସଙ୍କୋଚନ ମଧ୍ୟ କରେ) ।

ଅର୍ଥ—କୌଣସି ଦରିଦ୍ର ବ୍ୟକ୍ତି ପ୍ରଥମେ ଯବଧାନ ଆଞ୍ଜୁଳାଏ ପାଇବା ପାଇଁ ଉଦ୍ୟମ କରେ । ପରେ ଯେତେବେଳେ ଧନୀ ହୋଇଯାଏ ସେତେବେଳେ ସେ ଜଗତକୁ ତୃଣ ପରି ତୁଚ୍ଛ ମନେକରେ । ଏଣୁ ଏହି ଦୁଇ ପ୍ରକାର ଚଞ୍ଚଳ ଅବସ୍ଥା ପୁରୁଷକୁ ଗୁରୁ ଓ ଲଘୁ କରିବା ସଙ୍ଗେ ସଙ୍ଗେ ବସ୍ତୁଗୁଡ଼ିକୁ ମଧ୍ୟ ବିସ୍ତାରିତ ଓ ସଙ୍କୁଚିତ କରେ ।

ରାଜନ୍ ଦୁଧୁକ୍ଷସି ଯଦି କ୍ଷିତିଧେନୁମେତାଂ
ତେନାଦ୍ୟ ବତ୍ସମିବ ଲୋକମମୁଂ ପୁଷାଣ ।
ତସ୍ମିଂଶ୍ଚ ସମ୍ୟଗନିଶଂ ପରିପୋଷ୍ୟମାଣେ
ନାନାଫଳୈଃ ଫଳତି କଳ୍ପଲତେବ ଭୂମିଃ ॥୪୯॥

ଅନ୍ୱୟ—ରାଜନ୍ (ହେ ରାଜନ୍ !) ଏତାଂ କ୍ଷିତିଧେନୁଂ (ଏହି ପୃଥିବୀ ରୂପକ ଗାଈକୁ) ଯଦି ଦୁଧୁକ୍ଷସି (ଯଦି ଦୁହିଁବାକୁ ଇଚ୍ଛା କରୁଛ) ତେନ ଅଦ୍ୟ (ତେବେ ଆଜି) ଅମୁଂ ଲୋକଂ (ଏହି ଲୋକଙ୍କୁ) ବତ୍ସମ୍ ଇବ ପୁଷାଣ (ବାଛୁରି ପରି ପାଳନ କର) ତସ୍ମିନ୍ ଚ ଅନିଶଂ (ସେମାନଙ୍କୁ ସର୍ବଦା) ସମ୍ୟକ୍

ପରିପୋଷ୍ୟମାନେ (ଭଲଭାବରେ ପାଳନ କଲେ) ଭୂମିଃ କଳ୍ପଲତା ଇବ (ଏହି ଭୂମି କଳ୍ପଲତା ପରି) ନାନାଫଳୈଃ ଫଳତି (ନାନା ଫଳରେ ପରିପୂର୍ଣ୍ଣ ହେବ) ।

ଅର୍ଥ—ହେ ରାଜନ୍ ! ଆପଣ ଯଦି ଏହି ପୃଥିବୀକୁ ଗାଈପରି ଦୋହନ କରିବାକୁ ଇଚ୍ଛା କରୁଛନ୍ତି, ତେବେ ଆଜିଠାରୁ ପ୍ରଜାମାନଙ୍କୁ ବାଛୁରୀପରି ପାଳନ କରନ୍ତୁ । ସେହି ପ୍ରଜାମାନେ ସର୍ବଦା ଉତ୍ତମରୂପେ ପରିପାଳିତ ହେଲେ ଏହି ଭୂମି କଳ୍ପଲତା ପରି ନାନା ଫଳରେ ପରିପୂର୍ଣ୍ଣ ହେବ ।

ସତ୍ୟାନୃତା ଚ ପରୁଷା ପ୍ରିୟବାଦିନୀ ଚ
ହିଂସ୍ରା ଦୟାଳୁରପି ଚାର୍ଥପରା ବଦାନ୍ୟା ।
ନିତ୍ୟବ୍ୟୟା ପ୍ରଚୁରନିତ୍ୟଧନାଗମା ଚ
ବାରାଙ୍ଗନେବ ନୃପନୀତିରନେକରୂପା ॥୪୭॥

ଅନ୍ୱୟ—ନୃପନୀତିଃ (ରାଜନୀତି) ବାରାଙ୍ଗନା ଇବ (ବେଶ୍ୟା ପରି) ସତ୍ୟା ଅନୃତା ଚ (କେବେ ସତ୍ୟ ତ କେବେ ମିଥ୍ୟାର ଆଶ୍ରିତା) ପରୁଷା, ପ୍ରିୟବାଦିନୀ ଚ (କଠୋରବଚନା, ପ୍ରିୟବଚନା ମଧ୍ୟ) ହିଂସ୍ରା, ଦୟାଳୁଃ (ହିଂସାପରାୟଣା, ଦୟାବତୀ) ଅପି ଚ ଅର୍ଥପରା (ଆଉ ମଧ୍ୟ ଅର୍ଥପରାୟଣା) ବଦାନ୍ୟା (ଦାନପରାୟଣା) ନିତ୍ୟବ୍ୟୟା ଚ (ବ୍ୟୟଶୀଳା ମଧ୍ୟ) ପ୍ରଚୁରନିତ୍ୟ-ଧନାଗମା (ପ୍ରତିଦିନ ପ୍ରଚୁର ଧନପ୍ରାପ୍ତି ସ୍ୱରୂପା) ଅନେକରୂପା ଭବତି (ଏହିପରି ଅନେକ ରୂପ ଧାରଣ କରିଥାଏ) ।

ଅର୍ଥ—ରାଜନୀତି ବେଶ୍ୟାପରି କେତେବେଳେ ସତ୍ୟ ଉପରେ ତ କେତେବେଳେ ମିଥ୍ୟା ଉପରେ ପ୍ରତିଷ୍ଠିତ । କେବେ କଠୋର ତ କେବେ ପ୍ରିୟବାଦିନୀ ପରି ଜଣାପଡ଼େ । କେବେ ହିଂସ୍ର ତ କେବେ ଦୟାପୂର୍ଣ୍ଣା ଏବଂ କେବେ ଅର୍ଥ ଗ୍ରହଣ କରେ ତ କେବେ ଦାନପରାୟଣା ହୁଏ । କେବେ ବ୍ୟୟଶୀଳା ତ କେବେ ଧନାଗମର ମାର୍ଗ ଅନୁସରଣ କରେ । ରାଜନୀତି ପରିସ୍ଥିତି ନେଇ ନାନାପ୍ରକାର ରୂପ ଧାରଣ କରିଥାଏ ।

ଦାନଂ ଭୋଗୋ ନାଶସ୍ତିସ୍ରୋ ଗତୟୋ ଭବନ୍ତି ବିତ୍ତସ୍ୟ ।
ଯୋ ନ ଦଦାତି ନ ଭୁଙ୍କ୍ତେ ତସ୍ୟ ତୃତୀୟା ଗତିର୍ଭବତି ॥୪୭॥

ଅନ୍ୱୟ—ବିତ୍ତସ୍ୟ (ଧନର) ଦାନଂ (ଅନ୍ୟକୁ ଦେବା) ଭୋଗଃ (ନିଜେ ଭୋଗ କରିବା) ନାଶଃ (ନଷ୍ଟ ହେବା) ତିସ୍ରଃ ଗତୟଃ (ତିନି ପ୍ରକାର ଅବସ୍ଥା) ଭବନ୍ତି (ହୁଏ) ଯଃ ନ ଦଦାତି (ଯେ ଦାନ ନକରେ) ନ ଭୁଙ୍କ୍ତେ (ଭୋଗ ନକରେ) ତସ୍ୟ (ତା' ସମ୍ପଦର) ତୃତୀୟା ଗତିଃ ଭବତି (ତୃତୀୟ ଅବସ୍ଥା ଅର୍ଥାତ୍ ବିନାଶ ଘଟେ) ।

ଅର୍ଥ—କଷ୍ଟୋପାର୍ଜିତ ଧନସମ୍ପଦର ଦାନ, ଭୋଗ ଓ ବିନାଶ, ଏହିପରି ତିନୋଟି ଅବସ୍ଥା ଅଛି । କୃପଣ ସ୍ୱଭାବ ହେତୁ ଯେ ଅନ୍ୟକୁ କିଛି ଦିଏନାହିଁ କି ନିଜେ ବି ଭୋଗ କରେନାହିଁ ତା'ର ସମସ୍ତ ସମ୍ପଦ ଶେଷରେ ନଷ୍ଟ ହୋଇଯାଏ ।

ତ୍ୱମେବ ଚାତକାଧାରୋଽସୀତି କେଷାଂ ନ ଗୋଚରଃ ।
କିମମ୍ଭୋଦବରାସ୍ମାକଂ କାର୍ପଣ୍ୟୋକ୍ତଂ ପ୍ରତୀକ୍ଷ୍ୟସେ ॥୪୮॥

ଅନ୍ୱୟ—ଅମ୍ଭୋଦବର (ହେ ମେଘଶ୍ରେଷ୍ଠ !) ତ୍ୱମ୍ ଏବ (ତୁମେହିଁ) ଚାତକାଧାରଃ (ଚାତକମାନଙ୍କ ଆଶ୍ରୟ) ଅସି ଇତି (ଅଟ ବୋଲି) କେଷାଂ ନ ଗୋଚରଃ (କାହାର ଅଜଣା ଅଛି) ଅତଃ (ଏଣୁ) ଅସ୍ମାକଂ (ଆମର) କାର୍ପଣ୍ୟୋକ୍ତଂ (ପ୍ରାର୍ଥନାକୁ) ପ୍ରତୀକ୍ଷ୍ୟସେ କିମ୍ (ଅପେକ୍ଷା କରୁଛନ୍ତି କି ?) ।

ଅର୍ଥ—ହେ ମେଘଶ୍ରେଷ୍ଠ ! ତୁମେ ଚାତକମାନଙ୍କର ଜଳପ୍ରାପ୍ତି ବିଷୟରେ ଏକମାତ୍ର ଆଧାର, ଏହା କିଏ ନଜାଣେ ? ସମସ୍ତେ ଜାଣନ୍ତି, ତୁମେ ଚାତକମାନଙ୍କର ତୃଷା ନିବାରଣ କର । ଆମର ପ୍ରାର୍ଥନା ଶୁଣିବାକୁ ଅପେକ୍ଷା କରୁଛ କି ? ପ୍ରାର୍ଥୀର ମନଜାଣି ଦାତା ଯେପରି ଦାନକରେ, ସେହିପରି ଆମର ପ୍ରାର୍ଥନାକୁ ଅପେକ୍ଷା ନରଖି ତୁମେ ଆମକୁ ଅଯାଚିତଭାବେ ଜଳ ଦାନକର ।

ବିଦ୍ୟାକୀର୍ତ୍ତିଃ ପାଳନଂ ବ୍ରାହ୍ମଣାନାଂ
ଦାନଂ ଭୋଗୋ ମିତ୍ରସଂରକ୍ଷଣଂ ଚ ।
ଯେଷାମେତେ ଷଡ୍‌ଗୁଣା ନ ପ୍ରବୃତ୍ତାଃ
କୋଽର୍ଥସ୍ତେଷାଂ ପାର୍ଥିବୋପାଶ୍ରୟେଣ ॥୪୯॥

ଅନ୍ୱୟ—ପାର୍ଥିବ (ହେ ରାଜନ୍ !) ଯେଷାଂ (ଯେଉଁମାନଙ୍କର) ବିଦ୍ୟା କୀର୍ତ୍ତିଃ (ବିଦ୍ୟାର ପ୍ରସାର, କୀର୍ତ୍ତିରକ୍ଷା) ବ୍ରାହ୍ମଣାନାଂ ପାଳନଂ (ବ୍ରାହ୍ମଣମାନଙ୍କ ପାଳନପୋଷଣ କରିବା) ଦାନଂ (ଅଯାଚିତଭାବେ ଦାନ ଦେବା) ଭୋଗଃ (ଉପଭୋଗ କରିବା) ମିତ୍ର ସଂରକ୍ଷଣଂ ଚ (ମିତ୍ରମାନଙ୍କୁ ସୁରକ୍ଷିତ ରଖିବା) ଏତେ ଷଡ୍‌ଗୁଣାଃ (ଏହି ଛଅଟି ଗୁଣ) ନ ପ୍ରବୃତ୍ତାଃ (ନାହିଁ) ତେଷାଂ (ସେହି ରାଜାମାନଙ୍କ) ଉପାଶ୍ରୟେଣ (ଆଶ୍ରୟ ଦ୍ୱାରା) କଃ ଅର୍ଥଃ (କି ଲାଭ ?) ।

ଅର୍ଥ—ହେ ରାଜନ୍ ! ଯେଉଁ ରାଜାଙ୍କଠାରେ ବିଦ୍ୟାର ପ୍ରସାର, କୀର୍ତ୍ତିରକ୍ଷା, ବ୍ରାହ୍ମଣପାଳନ, ଦାନ, ଭୋଗ ଓ ମିତ୍ରମାନଙ୍କୁ ରକ୍ଷା କରିବା, ଏହି ଛଅଟି ଗୁଣ ନାହିଁ, ସେପରି ରାଜାଙ୍କୁ ଆଶ୍ରୟ କରି କି ଲାଭ ? ରାଜା ବା ଶାସକଙ୍କଠାରେ ଉକ୍ତ ଛଅଟି ଗୁଣ ରହିବା ବାଞ୍ଛନୀୟ ।

ଯଦ୍ଧାତ୍ରା ନିଜଭାଲ ପଟ୍ଟଲିଖିତଂ ସ୍ତୋକଂ ମହଦ୍‌ବା ଧନଂ
ତତ୍ ପ୍ରାପ୍ନୋତି ମରୁସ୍ଥଳେଽପି ନିତରାଂ ମେରୌତତୋନାଧିକମ୍ ।
ତଦ୍ଧୀରୋ ଭବ ବିତ୍ତବତ୍ସୁ କୃପଣାଂ ବୃତ୍ତିଂ ବୃଥା ମା କୃଥାଃ
କୂପେ ପଶ୍ୟ ପୟୋନିଧାବପି ଘଟୋ ଗୃହ୍‌ଣାତି ତୁଲ୍ୟଂ ଜଳମ୍ ॥୫୦॥

ଅନ୍ୱୟ—ସ୍ତୋକଂ (ଅଳ୍ପ) ମହତ୍ ବା ଯତ୍ ଧନଂ (ଅଥବା ପର୍ଯ୍ୟାପ୍ତ ଯାହା କିଛି ଧନ) ଧାତ୍ରା (ବିଧାତା) ନିଜଭାଲପଟ୍ଟ ଲିଖିତଂ (ନିଜ କପାଳରେ ଲେଖିଛି) ଜନଃ (ଲୋକ) ନିତରାଂ ମରୁସ୍ଥଳେ (ନିପଟ ମରୁଭୂମିରେ) ମେରୌ ଅପି (ମେରୁ ପର୍ବତରେ ମଧ୍ୟ) ତତ୍ ପ୍ରାପ୍ନୋତି (ତାହା ପାଏ) ତତଃ ଅଧିକଂ ନ (ତା'ଠାରୁ ଅଧିକ ପାଏ ନାହିଁ) ତତ୍ ଧୀରୋ ଭବ (ତେଣୁ ଧୈର୍ଯ୍ୟ ଧର)

ବିତ୍ତବତ୍ସୁ (ଧନୀ ଲୋକଙ୍କ ଆଗରେ) ବୃଥା କୃପଣାଂ ବୃତ୍ତିଂ ମା କୃଥାଃ (ବୃଥାରେ ଦୀନବୃତ୍ତି ଅବଲମ୍ବନ କର ନାହିଁ) ପଶ୍ୟ (ଦେଖ) ଘଟଃ (କଳସ) କୂପେ ପୟୋନିଧୌ ଅପି (କୂଅ ଓ ସମୁଦ୍ରରେ ମଧ୍ୟ) ତୁଲ୍ୟଂ ଜଳଂ ଗୃହ୍ଣାତି (ସମପରିମାଣ ଜଳ ଆଣେ) ।

ଅର୍ଥ—ବିଧାତା ମଣିଷର କପାଳରେ ଅଳ୍ପ ହେଉ ବା ବହୁତ ହେଉ ଯାହାକିଛି ଧନପ୍ରାପ୍ତି କଥା ଲେଖିଛି, ତାହା ସେ ନିର୍ଜନ ମରୁଭୂମିରେ ଥାଇ ବା ମେରୁ ପର୍ବତରେ ଥାଇ ମଧ୍ୟ ପାଇଥାଏ—ସେଥିରୁ ଅଧିକ ପାଏ ନାହିଁ । ତେଣୁ ଧୈର୍ଯ୍ୟ ରକ୍ଷାକରିବା ଉଚିତ । କେବେହେଲେ ଧନୀଲୋକଙ୍କ ଆଗରେ ବୃଥାରେ ଦୀନବୃତ୍ତି ଅବଲମ୍ବନ କରିବା ଉଚିତ ନୁହେଁ । କାରଣ, କଳସୀଟିଏ ନେଇ କୂଅରୁ ଯେତିକି ପାଣି ଆଣିହୁଏ, ସମୁଦ୍ରରୁ ମଧ୍ୟ ସେତିକି ପାଣି ଆଣିହୁଏ । ତେଣୁ ଅଯଥା ଦୀନବୃତ୍ତି ଅବଲମ୍ବନ କରିବାର ପ୍ରୟୋଜନ ନାହିଁ ।

ରେ ରେ ଚାତକ ସାବଧାନମନସା ମିତ୍ର ଂ କ୍ଷଣଂ ଶ୍ରୂୟତା-
ମମ୍ଭୋଦା ବହବୋ ବସନ୍ତି ଗଗନେ ସର୍ବେଽପି ନୈତାଦୃଶାଃ ।
କେଚିଦ୍ବୃଷ୍ଟିଭିରାର୍ଦ୍ରୟନ୍ତି ବସୁଧାଂ ଗର୍ଜନ୍ତି କେଚିଦ୍ବୃଥା
ଯଂ ଯଂ ପଶ୍ୟସି ତସ୍ୟ ତସ୍ୟ ପୁରତୋ ମା ବ୍ରୂହି ଦୀନଂ
ବଚଃ ॥୫୧॥

ଅନ୍ୱୟ—ରେ ରେ ମିତ୍ରଂ ଚାତକ (ହେ ଚାତକ ବନ୍ଧୁ) ସାବଧାନ ମନସା (ସାବଧାନ ହୋଇ) କ୍ଷଣଂ ଶ୍ରୂୟତାଂ (ଟିକିଏ ଶୁଣ) ଗଗନେ ବହବଃ ଅମ୍ଭୋଦାଃ (ଆକାଶରେ ଅନେକ ମେଘ) ବସନ୍ତି (ଅଛନ୍ତି) ସର୍ବେ ଅପି ନ ଏତାଦୃଶାଃ (ସମସ୍ତେ ଏପରି ସଦସ୍ୟ ନୁହନ୍ତି) କେଚିତ୍ ବୃଷ୍ଟିଭିଃ ବସୁଧାମ୍ ଆର୍ଦ୍ରୟନ୍ତି (କେତେକ ବର୍ଷା ଦ୍ୱାରା ପୃଥିବୀକୁ ଆପ୍ଲୁତ କରନ୍ତି) କେଚିତ୍ ବୃଥା ଗର୍ଜନ୍ତି (କେତେକ ମିଛରେ ଗର୍ଜନ କରନ୍ତି) ଯଂ ଯଂ ପଶ୍ୟସି (ଯାହାକୁ ଦେଖୁଛ) ତସ୍ୟ ତସ୍ୟ ପୁରତଃ (ତାହା ଆଗରେ) ଦୀନଂ ବଚଃ ମା ବ୍ରୂହି (ଦୀନ ବଚନ କୁହ ନାହିଁ) ।

ଅର୍ଥ—ହେ ବଂଧୁ ଚାତକ ! ମନ ଦେଇ ମୋ'କଥା ଟିକିଏ ଶୁଣ । ଆକାଶରେ ଅନେକ ମେଘ ଅଛନ୍ତି । କିନ୍ତୁ ସମସ୍ତେ ଦୟାଳୁ ନୁହନ୍ତି । ସେଥିରୁ କେତେକ ବର୍ଷା ଜଳରେ ପୃଥିବୀକୁ ଆପ୍ଳୁତ କରନ୍ତି ଏବଂ ଅନ୍ୟ କେତେକ ବୃଥାରେ ଗର୍ଜନ କରନ୍ତି । ତେଣୁ ଯାହାକୁ ଯାହା ଦେଖୁଛ ସେହି ସେହି ମେଘ ଆଗରେ ଅଯଥା ନିଜର ଦୀନତା ପ୍ରକାଶ କରନାହିଁ ।

ଅକରୁଣତ୍ୱମକାରଣବିଗ୍ରହଃ
ପରଧନେ ପରଯୋଷିତି ଚ ସ୍ପୃହା ।
ସ୍ୱଜନବନ୍ଧୁଜନେଷ୍ୱସହିଷ୍ଣୁତା
ପ୍ରକୃତିସିଦ୍ଧମିଦଂହି ଦୁରାତ୍ମନାମ୍ ॥୫୨॥

ଅନ୍ୱୟ—ଅକରୁଣତ୍ୱଂ (ନିର୍ଦ୍ଦୟତା) ଅକାରଣ ବିଗ୍ରହଃ (ଅଯଥା ବିବାଦ) ପରଧନେ ପରଯୋଷିତି ଚ ସ୍ପୃହା (ପରଧନରେ ଓ ପର ସ୍ତ୍ରୀଠାରେ ଅଭିଳାଷ) ସ୍ୱଜନ ବଂଧୁଜନେଷୁ ଅସହିଷ୍ଣୁତା (ନିଜ ଆତ୍ମୀୟ, ବଂଧୁ, ସ୍ୱଜନ ଲୋକଙ୍କ ପ୍ରତି ଈର୍ଷ୍ୟା) ଇଦଂ ହି (ଏହାହିଁ) ଦୁରାତ୍ମନାଂ (ଦୁର୍ଜନ ବା ଦୁଷ୍ଟ-ମାନଙ୍କର) ପ୍ରକୃତିସିଦ୍ଧମ୍ (ସ୍ୱଭାବସିଦ୍ଧ ଦୁର୍ଗୁଣ) ।

ଅର୍ଥ—ନିର୍ଦ୍ଦୟତା, ଅଯଥା କଳହ, ପରଧନ ଓ ପର ସ୍ତ୍ରୀଠାରେ ଅଭିଳାଷ ପୋଷଣ, ବନ୍ଧୁ ଓ ସ୍ୱଜନମାନଙ୍କ ପ୍ରତି ଈର୍ଷ୍ୟା ପ୍ରଭୃତି ଦୁର୍ଜନ ବା ଦୁଷ୍ଟମାନଙ୍କର ସ୍ୱାଭାବିକ ଆଚରଣ ରୂପେ ଅଭିହିତ । ଏହି ସବୁ ଦୁର୍ଗୁଣ ସେମାନଙ୍କର ସହଜାତ ପ୍ରକୃତି ।

ଦୁର୍ଜନଃ ପରିହର୍ତ୍ତବ୍ୟୋ ବିଦ୍ୟୟା ଭୂଷିତୋଽପି ସନ୍ ।
ମଣିନାଲଂକୃତଃ ସର୍ପଃ କିମସୌ ନ ଭୟଙ୍କରଃ ॥୫୩॥

ଅନ୍ୱୟ—ଦୁର୍ଜନଃ (ଦୁଷ୍ଟଲୋକ) ବିଦ୍ୟୟା ଭୂଷିତଃ ଅପି ସନ୍ (ବିଦ୍ୟାରେ ଭୂଷିତ ହୋଇଥିଲେ ମଧ୍ୟ) ପରିହର୍ତ୍ତବ୍ୟଃ (ପରିତ୍ୟାଜ୍ୟ) ସର୍ପଃ ମଣିନା ଅଲଂକୃତଃ (ସାପ ମଣିରେ ଭୂଷିତ ଥାଏ) ଅସୌ କିଂ ନ ଭୟଙ୍କରଃ (ସେ କଣ ଭୟଙ୍କର ନୁହେଁ ?) ।

ଅର୍ଥ—ଦୁଷ୍ଟଲୋକ ବିଦ୍ୟାରେ ଭୂଷିତ ହୋଇଥିଲେ ମଧ୍ୟ ସର୍ବଦା ପରିତ୍ୟାଜ୍ୟ । ସେପରି ବ୍ୟକ୍ତି ସହିତ ବନ୍ଧୁତା କରିବା ଉଚିତ ନୁହେଁ । କାରଣ, ବିଷଧର ସର୍ପ ଅମୂଲ୍ୟ ମଣିଦ୍ୱାରା ଭୂଷିତ ହୋଇଥିଲେ ବି ସେ କଣ ଭୟଙ୍କର ନୁହେଁ ? ତେଣୁ ସର୍ପ ଓ ଦୁର୍ଜନ ଏକଶ୍ରେଣୀୟ ବୋଲି ବିବେଚିତ ହୁଅନ୍ତି ।

ଜାଡ୍ୟଂ ହ୍ରୀମତି ଗଣ୍ୟତେ ବ୍ରତରୁଚୌ ଦମ୍ଭଃ ଶୁଚୌ କୈତବଂ
ଶୂରେ ନିର୍ଘୃଣତା ମୁନୌ ବିମତିତା ଦୈନ୍ୟଂ ପ୍ରିୟାଳାପିନି ।
ତେଜସ୍ୱିନ୍ୟବଲିପ୍ତତା ମୁଖରତା ବକ୍ତର୍ଯ୍ୟଶକ୍ତିଃ ସ୍ଥିରେ
ତତ୍କୋନାମ ଗୁଣୋ ଭବେତ୍ସ ଗୁଣିନାଂ ଯୋ ଦୁର୍ଜନୈର୍ନାଙ୍କିତଃ ॥୫୪॥

ଅନ୍ୱୟ—ଦୁର୍ଜନୈଃ (ଦୁଷ୍ଟମାନେ) ହ୍ରୀମତି (ଲୋକଠାରେ ଥିବା ଲଜ୍ଜାକୁ) ଜାଡ୍ୟଂ ଗଣ୍ୟତେ (ଜଡ଼ତା, ମୂର୍ଖତା ବୋଲି ଗଣନା କରନ୍ତି) ବ୍ରତରୁଚୌ (ବ୍ରତପାଳନକାରୀଠାରେ) ଦମ୍ଭଃ (ଅହଙ୍କାର) ଶୁଚୌ କୈତବ୍ୟଂ (ଶୁଦ୍ଧପୂତ ଆଚରଣରେ କପଟତା) ଶୂରେ ନିର୍ଘୃଣତା (ବୀରଠାରେ ନିର୍ଦ୍ଦୟତା) ମୁନୌ ବିମତିତା (ମୁନିଠାରେ ବୁଦ୍ଧିହୀନତା) ପ୍ରିୟାଳାପିନି ଦୈନ୍ୟଂ (ପ୍ରିୟବାଦୀଠାରେ ଦୀନତା) ତେଜସ୍ୱିନି ଅବଲିପ୍ତତା (ତେଜସ୍ୱୀ ପୁରୁଷଠାରେ ଗର୍ବ) ବକ୍ତରି ମୁଖରତା (ବକ୍ତାଠାରେ ବାଚାଳତା) ସ୍ଥିରେ ଅଶକ୍ତି (ଧୀରସ୍ଥିର ବ୍ୟକ୍ତିଠାରେ ଅସାମର୍ଥ୍ୟ ଦୋଷ ଦେଖିଥାନ୍ତି) ତତ୍ ଗୁଣିନାଂ ସଃ କଃ ଗୁଣଃ ନାମ ଭବେତ୍ (ତେବେ ଗୁଣୀଲୋକଙ୍କର କେଉଁ ଗୁଣକୁ ଗୁଣ ରୂପେ ଗଣନା କରାଯିବ) ଯଃ (ଯେଉଁ ଗୁଣ) ଦୁର୍ଜନୈଃ ନ ଅଙ୍କିତ (ଯାହା ଦୁର୍ଜନମାନଙ୍କ ଦ୍ୱାରା ଗଣନା କରାଯାଇ ନାହିଁ) ।

ଅର୍ଥ—ଦୁର୍ଜନମାନେ, ଲୋକଠାରେ ଥିବା ଭୂଷଣ ସ୍ୱରୂପ ଲଜ୍ଜାକୁ ଜଡ଼ତା, ବ୍ରତାଚରଣକୁ ଦମ୍ଭ, ପବିତ୍ରତାକୁ ଛଳନା, ବୀରତ୍ୱକୁ ନିର୍ଦ୍ଦୟତା, ମୁନିଠାରେ ବୁଦ୍ଧିହୀନତା, ପ୍ରିୟବାକ୍ୟକୁ ଦୀନତା, ତେଜସ୍ୱୀଠାରେ ଗର୍ବ, ବକ୍ତାଠାରେ ବାଚାଳତା, ଧୀରତା ବା ଧୈର୍ଯ୍ୟକୁ ଅସାମର୍ଥ୍ୟ ଦୋଷରୂପେ

ଗଣନା କରନ୍ତି । ତେବେ ଗୁଣୀଲୋକର ସେହି ଗୁଣ କଣ ଅଛି, ଯାହାକୁ ଦୁର୍ଜନମାନେ ଗଣନା କରନାହାନ୍ତି ଏବଂ ଯାହାକୁ ପ୍ରକୃତ ଗୁଣରୂପେ ଗଣନା କରାଯାଇପାରିବ ? ଦୁର୍ଜନମାନେ ସମସ୍ତ ଉତ୍ତମ ଗୁଣକୁ ଦୋଷରୂପେ ବିବେଚନା କରନ୍ତି ବୋଲି ଏଥିରୁ ପ୍ରତିପାଦିତ ହୁଏ ।

ଲୋଭଶ୍ଚେଦଗୁଣେନ କିଂ ପିଶୁନତା ଯଦ୍ୟସ୍ତି କିଂ ପାତକୈଃ
ସତ୍ୟଂ ଚେତ୍ତପସା ଚ କିଂ ଶୁଚି ମନୋ ଯଦ୍ୟସ୍ତି ତୀର୍ଥେନ କିମ୍ ।
ସୌଜନ୍ୟଂ ଯଦି କିଂ ଗୁଣୈଃ ସ୍ୱମହିମା ଯଦ୍ୟସ୍ତି କିଂ ମଣ୍ଡନୈଃ
ସଦ୍‌ବିଦ୍ୟା ଯଦି କିଂ ଧନୈରପଯଶୋ ଯଦ୍ୟସ୍ତି କିଂ ମୃତ୍ୟୁନା ॥୫୫॥

ଅନ୍ୱୟ—ଲୋଭଃ ଅସ୍ତି ଚେତ୍ (ଲୋଭ ଯଦି ଅଛି) ଅଗୁଣେନ କିମ୍ (ଦୁର୍ଗୁଣରେ କି ପ୍ରୟୋଜନ) ଯଦି ପିଶୁନତା (ଯଦି ଖଳପ୍ରକୃତି ଅଛି) ପାତକୈଃ କିମ୍ (ପାପରେ କି ପ୍ରୟୋଜନ) ସତ୍ୟଂ ଚେତ୍ ତପସା କିଂ (ସତ୍ୟ ଥିଲେ ତପସ୍ୟା କରିବାରେ କି ଲାଭ ?) ମନଃ ଯଦି ଶୁଚିଃ ଅସ୍ତି (ମନ ଯଦି ପବିତ୍ର ଅଛି) ତୀର୍ଥେନ କିମ୍ (ତୀର୍ଥଯାତ୍ରାରେ କି ପ୍ରୟୋଜନ) ଯଦି ସୌଜନ୍ୟମ୍ ଅସ୍ତି ଗୁଣୈଃ କିମ୍ (ଯଦି ସୁଜନତା ଅଛି ଅନ୍ୟ ଗୁଣରେ କି ଲାଭ ?) ସ୍ୱମହିମା ଯଦି ଅସ୍ତି ମଣ୍ଡନୈଃ କିମ୍ (ଯଦି ନିଜର ମହତ୍ତ୍ୱ ଅଛି ଭୂଷଣରେ କି ପ୍ରୟୋଜନ ?) ଯଦି ସଦ୍‌ବିଦ୍ୟା ଅସ୍ତି ଧନୈଃ କିମ୍ (ଯଦି ଉତ୍ତମ ବିଦ୍ୟା ଜ୍ଞାନ ଅଛି ଧନରେ କି ପ୍ରୟୋଜନ ?) ଯଦି ଅପଯଶଃ ଅସ୍ତି ମୃତ୍ୟୁନା କିମ୍ (ଯଦି ଦୁର୍ନାମ ଅଛି ତେବେ ମୃତ୍ୟୁରେ କି ପ୍ରୟୋଜନ ?) ।

ଅର୍ଥ—ଯେଉଁ ଲୋକ ଲୋଭୀ ତା'ର ଦୁର୍ଗୁଣରେ ପ୍ରୟୋଜନ ନାହିଁ । ଖଳ ପ୍ରକୃତିଠାରୁ ବଳି ପାପ ଆଉ ନାହିଁ । ସତ୍ୟବାଦୀ ତପସ୍ୟା କରିବାର ଆବଶ୍ୟକତା ନାହିଁ । ମନ ପବିତ୍ର ଥିଲେ ତୀର୍ଥଯାତ୍ରା ନିଷ୍ପ୍ରୟୋଜନ । ସୌଜନ୍ୟ ଥିଲେ ଅନ୍ୟ ଗୁଣର ପ୍ରୟୋଜନ ନାହିଁ । ନିଜର ମହତ୍ତ୍ୱ ଥିଲେ ଅଳଙ୍କାରର ଆବଶ୍ୟକତା ନାହିଁ । ଉତ୍ତମ ବିଦ୍ୟା ହାସଲ କରିଥିଲେ ଧନର ପ୍ରୟୋଜନ ନାହିଁ । ଅପଯଶ ବା ନିନ୍ଦା ଥିଲେ ମୃତ୍ୟୁରେ ପ୍ରୟୋଜନ ନାହିଁ । ତେଣୁ ଲୋଭକୁ ଦୁର୍ଗୁଣ, ଖଳପ୍ରକୃତିକୁ ପାପ, ସତ୍ୟକୁ ତପସ୍ୟା, ପବିତ୍ର

ହୃଦୟକୁ ତୀର୍ଥଯାତ୍ରା, ସୌଜନ୍ୟକୁ ସର୍ବୋତ୍ତମ ଗୁଣ, ଆତ୍ମମହତ୍ତ୍ୱକୁ ଅଳଙ୍କାର, ଉତ୍ତମ ବିଦ୍ୟାକୁ ମହାଧନ ଓ ଦୁର୍ନାମକୁ ମୃତ୍ୟୁ ସହିତ ତୁଳନା କରାଯାଇଛି ।

ଶଶୀ ଦିବସଧୂସରୋ ଗଳିତଯୌବନା କାମିନୀ
ସରୋ ବିଗତବାରିଜଂ ମୁଖମନକ୍ଷରଂ ସ୍ୱାକୃତେଃ ।
ପ୍ରଭୁର୍ଧନପରାୟଣଃ ସତତ ଦୁର୍ଗତଃ ସଜ୍ଜନୋ
ନୃପାଙ୍ଗଣଗତଃ ଖଳୋ ମନସି ସପ୍ତ ଶଲ୍ୟାନି ମେ ॥୫୬॥

ଅନ୍ୱୟ—ଦିବସ ଧୂସରଃ ଶଶୀ (ଦିନରେ କ୍ଷୀଣକାନ୍ତି ଚନ୍ଦ୍ର) ଗଳିତ ଯୌବନା କାମିନୀ (ବିଗତ ଯୌବନା ନାରୀ) ବିଗତ ବାରିଜଂ ସରଃ (ପଦ୍ମହୀନ ପୁଷ୍କରିଣୀ) ସ୍ୱାକୃତେଃ ଅନକ୍ଷରଂ ମୁଖଂ (ସୁନ୍ଦର ଆକୃତି ଥାଇ ବି ମୂର୍ଖ) ଧନପରାୟଣଃ ପ୍ରଭୁଃ (ଲୋଭୀ ପ୍ରଭୁ, ଶାସକ) ସତତଦୁର୍ଗତଃ ସଜ୍ଜନଃ (ଦୁରବସ୍ଥାଗ୍ରସ୍ତ ସଜ୍ଜନ) ନୃପାଙ୍ଗଣଗତଃ ଖଳଃ (ରାଜଦରବାରରେ ଥିବା ଦୁଷ୍ଟଲୋକ) ଇତି ମେ ମନସି ସପ୍ତଶଲ୍ୟାନି (ଏହି ସାତୋଟି ମୋ' ମନରେ ଅସ୍ତ୍ରରୂପେ ଆଘାତ ଦିଅନ୍ତି) ।

ଅର୍ଥ—ଦିନରେ କ୍ଷୀଣକାନ୍ତି ଚନ୍ଦ୍ର, ବିଗତଯୌବନା କାମିନୀ, ପଦ୍ମହୀନ ସରୋବର, ସୁଦର୍ଶନ ହୋଇ ନିରକ୍ଷର, ଲୋଭୀ ପ୍ରଭୁ, ସର୍ବଦା ଦୁଃସ୍ଥ ଅବସ୍ଥାରେ ଥିବା ସଜ୍ଜନ ଓ ରାଜାଙ୍କ ସଭାରେ ଉପସ୍ଥିତ ଦୁଷ୍ଟଲୋକ—ଏହି ସାତୋଟି ମୋ' ମନରେ ଗଭୀର ଆଘାତ ଦିଅନ୍ତି ।

ନ କଶ୍ଚିଚ୍ଚଣ୍ଡକୋପାନାମାତ୍ମୀୟୋ ନାମ ଭୂଭୁଜାମ୍ ।
ହୋତାରମପି ଜୁହ୍ୱାନଂ ସ୍ପୃଷ୍ଟୋ ଦହତି ପାବକଃ ॥୫୭॥

ଅନ୍ୱୟ—ଚଣ୍ଡକୋପାନାଂ (ପ୍ରଚଣ୍ଡକ୍ରୋଧୀ ଭୂଭୁଜାଂ (ରାଜାମାନଙ୍କର) କଶ୍ଚିତ୍ (କେହି) ଆତ୍ମୀୟଃ ନାମ ନ (ଆତ୍ମୀୟ ହୋଇ ରହନ୍ତି ନାହିଁ) ପାବକଃ (ଅଗ୍ନି) ସ୍ପୃଷ୍ଟଃ (ସ୍ପର୍ଶକଲେ) ଜୁହ୍ୱାନମ୍ ଅପି ହୋତାରଂ (ଆହୁତି ଦେଉଥିବା ହୋମକର୍ତ୍ତାଙ୍କୁ ମଧ୍ୟ) ଦହତି (ଦହନ କରେ) ।

ଅର୍ଥ—ଅଗ୍ନିକୁ ସ୍ପର୍ଶ କଲେ ସେ ଯେପରି ଅଗ୍ନିହୋତ୍ର ଦେଉଥିବା ହୋତା ବା ହୋମକର୍ତ୍ତାଙ୍କୁ ଦହନ କରେ, ସେହିପରି ଅତୀବ କ୍ରୋଧପରାୟଣ ରାଜାଙ୍କର କେହି ଆତ୍ମୀୟ ହୋଇ ରହନ୍ତି ନାହିଁ । କ୍ରୁଦ୍ଧ ରାଜା ସମସ୍ତଙ୍କୁ ବିନାଶ କରନ୍ତି ।

ମୌନାନ୍ମୂକଃ ପ୍ରବଚନପଟୁର୍ବାଟୁକୋ ଜଳ୍ପକୋ ବା
ଧୃଷ୍ଟଃପାର୍ଶ୍ୱେ ବସତି ଚ ସଦା ଦୂରତଶ୍ଚାପ୍ରଗଲ୍‌ଭଃ ।
କ୍ଷାନ୍ତ୍ୟାଭୀରୁର୍ଯଦି ନ ସହତେ ପ୍ରାୟଶୋ ନାଭିଜାତଃ
ସେବାଧର୍ମଃ ପରମଗହନୋ ଯୋଗିନାମପ୍ୟଗମ୍ୟଃ ॥୫୮॥

ଅନ୍ୱୟ—ମୌନାତ୍ ମୂକଃ (ନୀରବ ରହିଲେ ଜଡ଼) ପ୍ରବଚନପଟୁଃ ବାଟୁକଃ (ବେଶୀ କହିଲେ ବାତୁଳ ବା ବାଚାଳ) ବା ଜଳ୍ପକଃ (ଅଥବା ଅସଙ୍ଗତ-ଭାଷୀ) ସର୍ବଦା ପାର୍ଶ୍ୱେ ବସତି ଚ ଧୃଷ୍ଟଃ (ସବୁବେଳେ ପାଖରେ ରହିଲେ ଧୃଷ୍ଟ ବା ଅବିନୀତ) ଦୂରତଃ ଚ ଅପ୍ରଗଲ୍‌ଭଃ (ଦୂରରେ ରହିଲେ ଅପ୍ରଗଲ୍‌ଭ ବା ପ୍ରତିଭାରହିତ) କ୍ଷାନ୍ତ୍ୟା ଭୀରୁଃ (କ୍ଷମାଶୀଳ ହେଲେ ଭୀରୁ) ଯଦି ନ ସହତେ (ଯଦି ସହି ନପାରିଲା) ପ୍ରାୟଶଃ ନ ଅଭିଜାତଃ (ତେବେ ପ୍ରାୟ ସଦ୍‌ବଂଶଜ ନୁହେଁ) ସେବାଧର୍ମଃ ପରମଗହନଃ (ସେବା ଧର୍ମ ପାଳନ କରିବା ଅତି କଠିନ) ଯୋଗିନାମ୍ ଅପି ଅଗମ୍ୟଃ (ଏହା ଯୋଗୀମାନଙ୍କ ପକ୍ଷରେ ବି ଅଗମ୍ୟ) ।

ଅର୍ଥ—ଯଦି ସେବକ ରୂପେ ରହି ଅବଲମ୍ବନ କଲା ତେବେ ମୂକ ବୋଲି ବିବେଚିତ ହେବ । ସେହିପରି ବେଶୀ କହିଲେ ବାଚାଳ ଅଥବା ଅସଙ୍ଗତଭାଷୀ, ପାଖରେ ରହିଲେ ଧୃଷ୍ଟ, ଦୂରରେ ରହିଲେ ମୂର୍ଖ, କ୍ଷମାପରାୟଣ ହେଲେ ଭୀରୁ, ସହିଷ୍ଣୁ ନହେଲେ ଅକୁଳୀନ ସେବକ ବୋଲି ଅଭିହିତ ହେବ । ତେଣୁ ସେବାଧର୍ମ ପାଳନ କରିବା ଅତି କଷ୍ଟକର । ଯୋଗୀମାନେ ମଧ୍ୟ ଏହି ଧର୍ମର ତତ୍ତ୍ୱ ଜାଣିପାରନ୍ତି ନାହିଁ ।

ଉଦ୍‌ଭାସିତାଖିଳଖଳସ୍ୟ ବିଶୃଙ୍ଖଳସ୍ୟ
ପ୍ରାଗ୍‌ଜାତବିସ୍ମୃତନିଜାଧମକର୍ମବୃତ୍ତେଃ ।

ଦୈବାଦବାପ୍ତବିଭବସ୍ୟ ଗୁଣଦ୍ୱିଷୋଽସ୍ୟ
ନୀଚସ୍ୟ ଗୋଚରଗତୈଃ ସୁଖମାସ୍ୟତେ କୈଃ ॥୫୯॥

ଅନ୍ୱୟ—ପ୍ରାଗ୍‌ଜାତବିସ୍ତୃତନିଜାଧମକର୍ମବୃତ୍ତେଃ (ପୂର୍ବରୁ ବହୁତ ଦୁଷ୍କର୍ମ କରିଥିବା) ଉଦ୍‌ଗର୍ବିତାଖିଳଖଳଖଳସ୍ୟ (ଖଳରୂପେ ପ୍ରସିଦ୍ଧ ହୋଇଥିବା) ବିଶୃଙ୍ଖଳସ୍ୟ (ଶୃଙ୍ଖଳାହୀନ) ଦୈବାତ୍ ଅବାପ୍ତବିଭବସ୍ୟ (ଦୈବାତ୍ ଧନସମ୍ପଦ ଲାଭ କରିଥିବା) ଗୁଣଦ୍ୱିଷଃ (ଗୁଣବିଦ୍ୱେଷୀ) ଅସ୍ୟ ନୀଚସ୍ୟ (ଏହି ନୀଚର) ଗୋଚରଗତୈଃ କୈଃ (ଦୃଷ୍ଟିପଥକୁ ଆସି କିଏ) ସୁଖମ୍ ଆସ୍ୟତେ (ସୁଖରେ ରହେ ?) ।

ଅର୍ଥ—ପୂର୍ବରୁ ବହୁ ଦୁଷ୍କର୍ମ କରି ଖଳରୂପେ ପରିଚିତ, ବିଶୃଙ୍ଖଳ, ଦୈବାତ୍ ଧନସମ୍ପଦ ପାଇଥିବା, ନିନ୍ଦୁକ ଓ ନୀଚପ୍ରକୃତିର ଦୁର୍ଜନକୁ ଦେଖି କେହି ସୁଖୀ ହୁଏ କି ? କେହି କେବେହେଲେ ଖଳ ଲୋକକୁ ଦେଖିଲେ ସୁଖୀ ହୁଏନାହିଁ ।

ଆରମ୍ଭଗୁର୍ବୀ କ୍ଷୟିଣୀ କ୍ରମେଣ
ଲଘ୍ୱୀ ପୁରା ବୃଦ୍ଧିମତୀ ଚ ପଶ୍ଚାତ୍ ।
ଦିନସ୍ୟ ପୂର୍ବାର୍ଦ୍ଧପରାର୍ଦ୍ଧଭିନ୍ନା
ଛାୟେବ ମୈତ୍ରୀ ଖଳସଜ୍ଜନାନାମ୍ ॥୬୦॥

ଅନ୍ୱୟ—ଆରମ୍ଭଗୁର୍ବୀ (ପ୍ରଥମେ ବଡ଼) କ୍ରମେଣ କ୍ଷୟିଣୀ (କ୍ରମଶଃ କ୍ଷୀଣ ହେଉଥିବା) ପୁରା ଲଘ୍ୱୀ (ପୂର୍ବରୁ ଲଘୁ) ପଶ୍ଚାତ୍ ବୃଦ୍ଧିମତୀ ଚ (ପରେ ବୃଦ୍ଧିଯୁକ୍ତ) ଦିନସ୍ୟ (ଦିବସର) ପୂର୍ବାର୍ଦ୍ଧପରାର୍ଦ୍ଧଭିନ୍ନା (ସକାଳ ଓ ଉପରବେଳା ଭେଦରେ) ଛାୟା ଇବ (ଛାଇ ପରି) ଖଳ ସଜ୍ଜନାନାଂ ମୈତ୍ରୀ (ଖଳ ଓ ସଜ୍ଜନମାନଙ୍କ ମିତ୍ରତା ହୋଇଥାଏ) ।

ଅର୍ଥ—ସଜ୍ଜନମାନଙ୍କ ସହିତ ମିତ୍ରତା ଦିବସର ପୂର୍ବାର୍ଦ୍ଧ ଛାୟାପରି ପ୍ରଥମେ ଅଳ୍ପରୁ ଆରମ୍ଭ ହୋଇ ଧୀରେ ଧୀରେ ବଢ଼େ ଏବଂ ଦୁର୍ଜନ ଲୋକ ସହିତ ମିତ୍ରତା ଦିବସର ପରାର୍ଦ୍ଧ ଛାୟାପରି ପ୍ରଥମେ ବଡ଼ରୁ ଆରମ୍ଭ ହୋଇ ଧୀରେ ଧୀରେ କ୍ଷୟପ୍ରାପ୍ତ ହୁଏ । ଦିବସର ପୂର୍ବାହ୍ଣ ଓ ଅପରାହ୍ଣର ଛାୟା-

ପର ସଜ୍ଜନ ଓ ଦୁର୍ଜନ ଲୋକର ମିତ୍ରତା କ୍ରମଶଃ ବୃଦ୍ଧିପ୍ରାପ୍ତ ଓ କ୍ଷୟପ୍ରାପ୍ତ ହୁଏ ।

ମୃଗମୀନସଜ୍ଜନାନାଂ ତୃଣଜଳସନ୍ତୋଷବିହିତବୃତ୍ତୀନାମ୍ ।
ଲୁବ୍‌ଧକଧୀବରପିଶୁନା ନିଷ୍କାରଣବୈରିଣୋ ଜଗତି ॥୬୧॥

ଅନ୍ୱୟ—ଜଗତି (ଜଗତରେ) ତୃଣଜଳସନ୍ତୋଷବିହିତବୃତ୍ତୀନାଂ (ଘାସ, ପାଣି ଓ ସନ୍ତୋଷରେ ଜୀବନ ଯାପନ କରୁଥିବା) ମୃଗମୀନ ସଜ୍ଜନାନାଂ (ମୃଗ, ମାଛ ଓ ସାଧୁମାନଙ୍କର) ଲୁବ୍‌ଧକଧୀବରପିଶୁନାଃ (ବ୍ୟାଧ, କେଉଟ ଓ ଖଳବ୍ୟକ୍ତି) ନିଷ୍କାରଣବୈରିଣଃ (ଅକାରଣ ଶତ୍ରୁ ହୁଅନ୍ତି) ।

ଅର୍ଥ—ଜଗତରେ ଘାସ ଖାଇ, ପାଣି ପିଇ ଓ ସନ୍ତୋଷରେ ଜୀବନ ଯାପନ କରୁଥିବା ମୃଗ, ମାଛ ଓ ସଜ୍ଜନବ୍ୟକ୍ତିମାନଙ୍କ ପ୍ରତି ଯଥାକ୍ରମେ ବ୍ୟାଧ, କେଉଟ ଓ ଖଳଲୋକମାନେ ଅକାରଣ ଶତ୍ରୁତା ଆଚରଣ କରନ୍ତି ।

ବାଞ୍ଛା ସଜ୍ଜନସଙ୍ଗମେ ପରଗୁଣେ ପ୍ରୀତିର୍ଗୁରୌ ନମ୍ରତା
ବିଦ୍ୟାୟାଂ ବ୍ୟସନଂ ସ୍ୱଯୋଷିତି ରତିର୍ଲୋକାପବାଦାଦ୍‌ଭୟମ୍ ।
ଭକ୍ତିଃ ଶୂଳିନି ଶକ୍ତିରାତ୍ମଦମନେ ସଂସର୍ଗମୁକ୍ତିଃ ଖଳେ-
ଷ୍ୱେତେ ଯେଷୁ ବସନ୍ତି ନିର୍ମଳଗୁଣାସ୍ତେଭ୍ୟୋ ନରେଭ୍ୟୋ ନମଃ ॥୬୨॥

ଅନ୍ୱୟ—ସଜ୍ଜନ ସଙ୍ଗମେ ବାଞ୍ଛା (ସାଧୁସମାଗମରେ ଅଭିଳାଷ) ପରଗୁଣେ ପ୍ରୀତିଃ (ଅନ୍ୟର ଗୁଣରେ ଆନନ୍ଦ) ଗୁରୌ ନମ୍ରତା (ଗୁରୁଜନଙ୍କ-ଠାରେ ନମ୍ରଭାବ) ବିଦ୍ୟାୟାଂ ବ୍ୟସନଂ (ବିଦ୍ୟାରେ ଅନୁରାଗ) ସ୍ୱଯୋଷିତି ରତିଃ (ନିଜ ସ୍ତ୍ରୀଠାରେ ପ୍ରଣୟ) ଲୋକାପବାଦାତ୍ ଭୟଂ (ଲୋକ ଅପବାଦକୁ ଭୟ) ଶୂଳିନି ଭକ୍ତିଃ (ଶିବଙ୍କଠାରେ ଭକ୍ତି) ଆତ୍ମଦମନେ ଶକ୍ତିଃ (ଆତ୍ମସଂଯମରେ ସାମର୍ଥ୍ୟ) ଖଳେଷୁ ସଂସର୍ଗମୁକ୍ତିଃ (ଖଳଲୋକ ସଂସର୍ଗରୁ ମୁକ୍ତି) ଏତେ ନିର୍ମଳ-ଗୁଣାଃ (ଏହି ଉତ୍ତମ ଗୁଣଗୁଡ଼ିକ) ଯେଷୁ ବସନ୍ତି (ଯାହା ପାଖରେ ଥାଏ) ତେଭ୍ୟଃ ନରେଭ୍ୟଃ ନମଃ (ସେହି ଲୋକମାନଙ୍କୁ ନମସ୍କାର) ।

ଅର୍ଥ– ସଜ୍ଜନସଙ୍ଗତିରେ ଇଚ୍ଛା, ଅନ୍ୟର ଗୁଣରେ ଆନନ୍ଦ ଅନୁଭବ, ଗୁରୁଜନମାନଙ୍କ ପ୍ରତି ନମ୍ରତା, ବିଦ୍ୟାରେ ଅନୁରାଗ, ନିଜ ସ୍ତ୍ରୀଠାରେ ରତି, ଲୋକ ଅପବାଦକୁ ଭୟ, ଶିବଙ୍କଠାରେ ଭକ୍ତି ଆତ୍ମସଂଯମ ସାମର୍ଥ୍ୟ, ଦୁର୍ଜନ-ସଙ୍ଗର ଅଭାବ—ଏହି ନିର୍ମଳ ଗୁଣଗୁଡ଼ିକ ଯାହା ପାଖରେ ଥାଏ, ସେହି ଲୋକମାନଙ୍କୁ ନମସ୍କାର ।

ବିପଦି ଧୈର୍ଯ୍ୟମଥାଭ୍ୟୁଦୟେ କ୍ଷମା
ସଦସି ବାକ୍‌ପଟୁତା ଯୁଧି ବିକ୍ରମଃ ।
ଯଶସି ଚାଭିରୁଚିର୍ବ୍ୟସନଂ ଶ୍ରୁତୌ
ପ୍ରକୃତିସିଦ୍ଧମିଦଂ ହି ମହାତ୍ମନାମ୍ ॥୬୩॥

ଅନ୍ୱୟ—ବିପଦି ଧୈର୍ଯ୍ୟଂ (ବିପଦକାଳରେ ଧୈର୍ଯ୍ୟ ଅବଲମ୍ବନ) ଅଥ ଅଭ୍ୟୁଦୟେ କ୍ଷମା (ଉନ୍ନତି ଅବସ୍ଥାରେ କ୍ଷମା ଆଚରଣ) ସଦସି ବାକ୍‌ପଟୁତା (ସଭାରେ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ) ଯୁଧି ବିକ୍ରମଃ (ଯୁଦ୍ଧରେ ପରାକ୍ରମ ପ୍ରଦର୍ଶନ) ଯଶସି ଚ ଅଭିରୁଚିଃ (ଯଶରେ ଆଗ୍ରହ) ଶ୍ରୁତୌ ବ୍ୟସନଂ (ବେଦାଦି ଶାସ୍ତ୍ର ଅଧ୍ୟୟନରେ ଆସକ୍ତି) ଇଦଂ ହି ମହାତ୍ମନାଂ ପ୍ରକୃତିସିଦ୍ଧମ୍ (ମହାପୁରୁଷ-ମାନଙ୍କର ଏଗୁଡ଼ିକ ସ୍ୱାଭାବିକ ଗୁଣ) ।

ଅର୍ଥ—ବିପଦରେ ଧୈର୍ଯ୍ୟ ଅବଲମ୍ବନ, ଉନ୍ନତିରେ କ୍ଷମା ଆଚରଣ, ସଭାରେ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ପ୍ରଦାନ, ଯୁଦ୍ଧରେ ପରାକ୍ରମ ପ୍ରଦର୍ଶନ, ଯଶରେ ଅଭିଳାଷ ଓ ବେଦାଧ୍ୟୟନରେ ଆସକ୍ତି—ଏଗୁଡ଼ିକ ମହାପୁରୁଷମାନଙ୍କର ସ୍ୱାଭାବିକ ଗୁଣରୂପେ ବିବେଚିତ ।

ପ୍ରଦାନଂ ପ୍ରଚ୍ଛନ୍ନଂ ଗୃହମୁପଗତେ ସମ୍ଭ୍ରମବିଧିଃ
ପ୍ରିୟଂ କୃତ୍ୱା ମୌନଂ ସଦସି କଥନଂ ଚାପ୍ୟୁପକୃତେଃ ।
ଅନୁତ୍ସେକୋ ଲକ୍ଷ୍ମ୍ୟାଂ ନିରଭିଭବସାରାଃ ପରକଥାଃ
ସତାଂ କେନୋଦ୍ଦିଷ୍ଟଂ ବିଷମମସିଧାରାବ୍ରତମିଦମ୍ ॥୬୪॥

ଅନ୍ୱୟ—ପ୍ରଦାନଂ ପ୍ରଚ୍ଛନ୍ନଂ (ଗୋପନରେ ଦାନ କରିବା) ଗୃହମ୍ ଉପଗତେ ସମ୍ଭ୍ରମବିଧିଃ (ଘରକୁ ଅତିଥି ଆସିଲେ ଆଦର କରିବା) ପ୍ରିୟଂ କୃତ୍ୱା ମୌନଂ (ଅନ୍ୟର ଉପକାର କରି ନୀରବ ରହିବା) ଅପିଚ ଉପକୃତେଃ ସଦସି କଥନଂ (ଉପକୃତ ହୋଇଥିଲେ ତାହା ସମସ୍ତଙ୍କ ଆଗରେ ପ୍ରକାଶ କରିବା) ଲକ୍ଷ୍ମ୍ୟାମ୍ ଅନୁତ୍ସେକଃ (ଧନସମ୍ପଦ ପାଇଲେବି ଗର୍ବ ନକରିବା) ଅନଭିଭବଗନ୍ଧାଃ ପରକଥା (ପରକଥାକୁ ଆକ୍ଷେପ ନକରିବା) ସତାଂ (ସାଧୁମାନଙ୍କର) ଇଦମ୍ ଅସିଧାରାବ୍ରତଂ (ଖଣ୍ଡାଧାର ପରି ତୀକ୍ଷ୍ଣ ଅର୍ଥାତ୍ କଠୋର ବ୍ରତ) କେନ ଉଦ୍ଦିଷ୍ଟମ୍ (କିଏ ଉପଦେଶ ଦେଇଛି ?) ।

ଅର୍ଥ—ଦାନ ଦେଇ ପ୍ରକାଶ ନକରିବା, ଅତିଥି ଗୃହକୁ ଆସିଲେ ଆଦର କରିବା, ପରର ଉପକାର କରି କାହାକୁ ନକହିବା, ଅନ୍ୟଦ୍ୱାରା ଉପକୃତ ହୋଇଥିଲେ ସମସ୍ତଙ୍କ ଆଗରେ ପ୍ରକାଶ କରିବା, ଧନୀ ହୋଇଗଲେ ମଧ୍ୟ ଗର୍ବ ନକରିବା ଓ ପରକଥାକୁ ନିନ୍ଦା ବା ଆକ୍ଷେପ ନକରିବା ହେଉଛି ସଜ୍ଜନମାନଙ୍କର ସ୍ୱଭାବସିଦ୍ଧ ଆଚରଣ । ତୀକ୍ଷ୍ଣ ଖଣ୍ଡାଧାର ପରି ଅତି କଠୋର ଏହି ବ୍ରତ ପାଳନକରିବା ପାଇଁ କେହି ତାଙ୍କୁ ଉପଦେଶ ଦେଇଛି କି ?

କରେ ଶ୍ଳାଘ୍ୟ ସ୍ତ୍ୟାଗଃ ଶିରସି ଗୁରୁପାଦପ୍ରଣୟିତା
ମୁଖେ ସତ୍ୟା ବାଣୀ ବିଜୟିଭୁଜୟୋର୍ବୀର୍ଯ୍ୟମତୁଳମ୍ ।
ହୃଦି ସ୍ୱଚ୍ଛା ବୃତ୍ତିଃ ଶ୍ରୁତମଧିଗତଂ ଚ ଶ୍ରବଣୟୋଃ
ବିନାପ୍ୟୈଶ୍ୱର୍ଯ୍ୟେଣ ପ୍ରକୃତିମହତାଂ ମଣ୍ଡନମିଦମ୍ ॥୬୫॥

ଅନ୍ୱୟ—କରେ (ହାତରେ) ତ୍ୟାଗଃ ଶ୍ଳାଘ୍ୟଃ (ଦାନ ପ୍ରଶଂସଣୀୟ) ଶିରସି (ମସ୍ତକରେ) ଗୁରୁପାଦ ପ୍ରଣୟିତା (ଗୁରୁପାଦ ବନ୍ଦନା) ମୁଖେ ସତ୍ୟାବାଣୀ (ମୁଖରେ ସତ୍ୟ ବଚନ) ବିଜୟିଭୁଜୟୋଃ (ବିଜୟୀ ବୀରର ବାହୁଦ୍ୱୟରେ) ଅତୁଳଂ ବୀର୍ଯ୍ୟଂ (ଅତୁଳନୀୟ ପରାକ୍ରମ) ହୃଦି ସ୍ୱଚ୍ଛା ବୃତ୍ତିଃ (ହୃଦୟରେ ସ୍ୱଚ୍ଛ, ସ୍ୱଚ୍ଛଭାବ) ଶ୍ରବଣୟୋଃଚ ଅଧିଗତଂ ଶ୍ରୁତଂ (କର୍ଣ୍ଣଦ୍ୱୟ ବେଦାଦି ଅଧ୍ୟୟନ ଓ ଶ୍ରବଣରେ) ଇଦଂ (ଏହା) ଐଶ୍ୱର୍ଯ୍ୟେଣ ବିନା ଅପି

(ବିନା ଐଶ୍ୱର୍ଯ୍ୟରେ) ପ୍ରକୃତିମହତାଂ ମଣ୍ଡନମ୍ (ମହାପୁରୁଷଙ୍କ ଭୂଷଣ ହୋଇଥାନ୍ତି) ।

ଅର୍ଥ—ପ୍ରଶଂସନୀୟ ଦାନଦ୍ୱାରା ହସ୍ତ, ଗୁରୁଜନମାନଙ୍କ ପାଦ ବନ୍ଦନାରେ ମସ୍ତକ, ସତ୍ୟବଚନଦ୍ୱାରା ମୁଖ, ଅତୁଳ ପରାକ୍ରମଦ୍ୱାରା ବାହୁଦ୍ୱୟ, ସ୍ୱଚ୍ଛ ଆଚରଣରେ ହୃଦୟ, ଶାସ୍ତ୍ରଶ୍ରବଣଦ୍ୱାରା କର୍ଣ୍ଣ ପ୍ରଭୃତି ବିନା ଐଶ୍ୱର୍ଯ୍ୟରେ ମଧ୍ୟ ମହାପୁରୁଷମାନଙ୍କର ଭୂଷଣ ହୋଇଥାନ୍ତି ।

ସମ୍ପତ୍ସୁ ମହତାଂ ଚିତ୍ତଂ ଭବତ୍ୟୁତ୍ପଳକୋମଳମ୍ ।
ଆପତ୍ସୁ ଚ ମହାଶୈଳଶିଳାସଙ୍ଘାତକର୍କଶମ୍ ॥୬୭॥

ଅନ୍ୱୟ—ମହତାଂ ଚିତ୍ତଂ (ମହାପୁରୁଷମାନଙ୍କର ହୃଦୟ) ସମ୍ପତ୍ସୁ (ସମ୍ପଦ ସମୟରେ) ଉତ୍ପଳକୋମଳଂ ଭବତି (ପଦ୍ମଫୁଲ ପରି କୋମଳ ହୁଏ) ଆପତ୍ସୁ ଚ (ବିପଦ ସମୟରେ ମଧ୍ୟ) ମହାଶୈଳଶିଳାସଂଘାତକର୍କଶଂ ଭବତି (ବଡ଼ ପର୍ବତରେ ଥିବା ଶିଳାଖଣ୍ଡ ପରି ଟାଣହୁଏ) ।

ଅର୍ଥ—ସମ୍ପଦ ସମୟରେ ମହାପୁରୁଷମାନଙ୍କର ହୃଦୟ ପଦ୍ମଫୁଲ ପରି କୋମଳ ଓ ବିପଦ ସମୟରେ ବଡ଼ ପର୍ବତରେ ଥିବା ଶିଳାଖଣ୍ଡ ପରି ଟାଣ ହୁଏ । ସମ୍ପଦ ସମୟରେ ଧନର ସଦ୍‌ବିନିଯୋଗ ଓ ବିପଦ ସମୟରେ ଧୈର୍ଯ୍ୟ ଧାରଣ କରିବା ମହାପୁରୁଷମାନଙ୍କର ସ୍ୱଭାବ ।

ସନ୍ତପ୍ତାୟସି ସଂସ୍ଥିତସ୍ୟ ପୟସୋ ନାମାପି ନ ଜ୍ଞାୟତେ
ମୁକ୍ତାକାରତୟା ତଦେବ ନଳିନୀପତ୍ରସ୍ଥିତଂ ରାଜତେ ।
ସ୍ୱାତ୍ୟାଂ ସାଗରଶୁକ୍ତିମଧ୍ୟପତିତଂ ତନ୍ମୌକ୍ତିକଂ ଜାୟତେ
ପ୍ରାୟେଣାଧମମଧ୍ୟମୋତ୍ତମଗୁଣାଃ ସଂସର୍ଗତୋ ଦେହିନାମ୍ ॥୬୮॥

ଅନ୍ୱୟ—ସନ୍ତପ୍ତାୟସି (ତାତିଲା ଲୁହାରେ) ସଂସ୍ଥିତସ୍ୟ ପୟସଃ (ପଡ଼ିଥିବା ଜଳର) ନାମ ଅପି ନ ଜ୍ଞାୟତେ (ଅସ୍ତିତ୍ୱ ମଧ୍ୟ ଜଣାପଡ଼େ ନାହିଁ) ତତ୍ ନଳିନୀପତ୍ରସ୍ଥିତଂ (ସେହି ଜଳ ନଳିନୀ (ପଦ୍ମ) ପତ୍ରରେ ପଡ଼ିଲେ) ମୁକ୍ତାକାରତୟା ଏବ ରାଜତେ (ମୁକ୍ତାପରି ଶୋଭାପାଏ) ସ୍ୱାତ୍ୟାଂ (ସ୍ୱାତୀ

ନକ୍ଷତ୍ରରେ) ସାଗରଶୁକ୍ତିମଧ୍ୟ ପତିତଂ (ସମୁଦ୍ରର ଶାମୁକା ଗର୍ଭରେ ପଡ଼ିଲେ) ତତ୍ ମୌକ୍ତିକଂ ଜାୟତେ (ସେହି ଜଳ ମୁକ୍ତା ପାଲଟିଯାଏ) ଅଧମମଧ୍ୟମୋ-ତ୍ତମଗୁଣାଃ ଦେହିନାଂ (ଲୋକମାନଙ୍କର ଅଧମ, ମଧ୍ୟମ ଓ ଉତ୍ତମଗୁଣ) ପ୍ରାୟେଣ ସଂସର୍ଗତଃ (ପ୍ରାୟ ସଂସର୍ଗହେତୁ ଜାତ ହୁଏ) ।

ଅର୍ଥ—ତାତଲ ଲୁହାରେ ପାଣି ପଡ଼ିଲେ ତା'ର ସତ୍ତ୍ୱା ବ ରହେ ନାହିଁ । ସେହି ପାଣି ପଦ୍ମପତ୍ରରେ ଥିଲେ ମୁକ୍ତାପରି ଦେଖାଯାଏ । ଯଦି ସେହି ଜଳ ସ୍ୱାତୀ ନକ୍ଷତ୍ରରେ ସମୁଦ୍ରରେ ଥିବା ଶାମୁକା ଗର୍ଭରେ ପଡ଼େ, ତେବେ ସେ ମୁକ୍ତା ପାଲଟିଯାଏ । ତେଣୁ ଲୋକମାନଙ୍କର ଅଧମ, ମଧ୍ୟମ ଓ ଉତ୍ତମ ଗୁଣ ପ୍ରାୟ ସଂସର୍ଗହେତୁ ଜାତହୁଏ ବୋଲି ଏଥିରୁ ଜଣାଯାଏ ।

ଯଃ ପ୍ରୀଣୟେତ୍ସୁଚରିତୈଃ ପିତରଂ ସ ପୁତ୍ରୋ<br>
ଯଦ୍ଭର୍ତ୍ତୁରେବ ହିତମିଚ୍ଛତି ତତ୍କଳତ୍ରମ୍ ।<br>
ତନ୍ମିତ୍ରମାପଦି ସୁଖେ ଚ ସମକ୍ରିୟଂ ଯ-<br>
ଦେତତ୍ତ୍ରୟଂ ଜଗତି ପୁଣ୍ୟକୃତୋ ଲଭନ୍ତେ ॥୬୮॥

ଅନ୍ୱୟ—ଯଃ ପୁତ୍ରଃ (ଯେଉଁ ପୁଅ) ସୁଚରିତୈଃ (ଉତ୍ତମ ଆଚରଣ ଓ କାର୍ଯ୍ୟଦ୍ୱାରା) ପିତରଂ ପ୍ରୀଣୟେତ୍ (ପିତାଙ୍କୁ ସନ୍ତୁଷ୍ଟ କରେ) ସଃ ପୁତ୍ରଃ (ସେ ଯୋଗ୍ୟ ପୁତ୍ର) ଯତ୍ କଳତ୍ରଂ (ଯେଉଁ ସ୍ତ୍ରୀ) ଭର୍ତ୍ତୁଃ ଏବ ହିତମ୍ ଇଚ୍ଛତି (ସ୍ୱାମୀଙ୍କର ମଙ୍ଗଳ କାମନା କରେ) ତତ୍ କଳତ୍ରମ୍ (ସେ ପ୍ରିୟତମା ପତ୍ନୀ) ଯତ୍ ଆପଦି (ଯେ ବିପଦରେ) ସୁଖେ ଚ ସମକ୍ରିୟଂ (ସୁଖରେ ମଧ୍ୟ ଦୁଃଖ ଓ ସୁଖ ଅନୁଭବ କରେ) ତତ୍ ମିତ୍ରମ୍ (ସେ ପ୍ରକୃତ ମିତ୍ର) ଜଗତି (ଜଗତରେ) ପୁଣ୍ୟକୃତଃ (ପୁଣ୍ୟବାନ୍ ଲୋକେ) ଏତତ୍ ତ୍ରୟଂ ଲଭନ୍ତେ (ଏହି ତିନୋଟି ସୁଖ ପାଇଥାନ୍ତି) ।

ଅର୍ଥ—ପିତାଙ୍କୁ ଯେ ଉତ୍ତମ କାର୍ଯ୍ୟଦ୍ୱାରା ସନ୍ତୁଷ୍ଟ କରେ, ସେ ହିଁ ପ୍ରକୃତ ପୁତ୍ର । ସ୍ୱାମୀର ମଙ୍ଗଳ ଯେ ସର୍ବଦା କାମନା କରେ, ସେ ହିଁ ପ୍ରିୟତମା ଭାର୍ଯ୍ୟା । ସମ୍ପଦ ଓ ବିପଦ କାଳରେ ଯେ ସମଭାବରେ ସୁଖ ଓ ଦୁଃଖ

ଅନୁଭବ କରେ, ସେ ଯଥାର୍ଥ ମିତ୍ର । ଜଗତରେ କେବଳ ପୁଣ୍ୟବାନ୍ ଲୋକେ ଏହି ତିନୋଟି ସୁଖର ଅଧିକାରୀ ହୋଇଥାନ୍ତି ।

ଏକୋଦେବଃ କେଶବୋ ବା ଶିବୋ ବା
ହ୍ୟେକଂ ମିତ୍ରଂ ଭୂପତିର୍ବା ଯତିର୍ବା ।
ଏକୋ ବାସଃ ପତ୍ତନେ ବା ବନେ ବା
ହ୍ୟେକା ନାରୀ ସୁନ୍ଦରୀ ବା ଦରୀ ବା ॥୭୯॥

ଅନ୍ୱୟ—କେଶବଃ ବା ଶିବଃ ବା (କେଶବ ବା ଶିବ) ଏକଃ ଦେବଃ (ଏକ ଦେବତା ଉପାସ୍ୟ) ଭୂପତିଃ ବା ଯତିଃ ବା (ରାଜା ଅଥବା ସନ୍ନ୍ୟାସୀ) ହି ଏକଂ ମିତ୍ରଂ (ଜଣକୁ ମିତ୍ରରୂପେ ଗ୍ରହଣୀୟ) ପତ୍ତନେ ବା ବନେ ବା (ନଗରରେ ବା ବନରେ) ଏକଃ ବାସଃ (ଗୋଟିଏ ବାସସ୍ଥାନ) ସୁନ୍ଦରୀ ବା ଦରୀ ବା (ସୁନ୍ଦରୀ ସ୍ତ୍ରୀ ଅଥବା କୁରୂପା ଭାର୍ଯ୍ୟା) ହି ଏକା ନାରୀ (ଗୋଟିଏ ରହିବା ଉଚିତ) ।

ଅର୍ଥ—ବିଷ୍ଣୁ ହୁଅନ୍ତୁ କି ଶିବ ହୁଅନ୍ତୁ ଏକ ଦେବତାଙ୍କୁ ପୂଜା କରିବା ଉଚିତ । ଜଣକୁ ମିତ୍ର ରୂପେ ଗ୍ରହଣ କରିବା ଉଚିତ ସେ ରାଜା ହୁଅନ୍ତୁ କି ସନ୍ନ୍ୟାସୀ ହୁଅନ୍ତୁ । ନଗର ହେଉ ବା ବନ ହେଉ ଗୋଟିଏ ସ୍ଥାନରେ ରହିବା ଉଚିତ । ଜଣକଠାରେ ପ୍ରୀତି ରହିବା ଉଚିତ ସେ ସୁନ୍ଦରୀ ନାରୀ ହେଉ କି କୁରୂପା ହେଉ ।

ନମ୍ରତ୍ୱେନୋନ୍ନମନ୍ତଃ ପରଗୁଣକଥନୈଃ ସ୍ୱାନ୍‌ଗୁଣାନ୍‌ଖ୍ୟାପୟନ୍ତଃ
ସ୍ୱାର୍ଥାନ୍‌ସମ୍ପାଦୟନ୍ତୋ ବିତତପ୍ରିୟୁତରାରମ୍ଭଯତ୍ନାଃ ପରାର୍ଥେ ।
କ୍ଷାନ୍ତ୍ୟୈବାକ୍ଷେପରୁକ୍ଷାକ୍ଷରମୁଖରମୁଖାନ୍‌ଦୁର୍ଜନାନ୍‌ଦୂଷୟନ୍ତଃ
ସନ୍ତଃ ସାଶ୍ଚର୍ଯ୍ୟଚର୍ଯ୍ୟା ଜଗତି ବହୁମତାଃ କସ୍ୟ ନାଭ୍ୟର୍ଚ୍ଚନୀୟାଃ
॥୮୦॥

ଅନ୍ୱୟ—ସନ୍ତଃ ନମ୍ରତ୍ୱେନ ଉନ୍ନମନ୍ତଃ (ସଜ୍ଜନମାନେ ନମ୍ରତାଦ୍ୱାରା ଉନ୍ନତ ହୁଅନ୍ତି) ପରଗୁଣକଥନୈଃ ସ୍ୱାନ୍ ଗୁଣାନ୍ ପ୍ରଖ୍ୟାପୟନ୍ତଃ (ପରର

ଗୁଣ କୀର୍ତ୍ତନଦ୍ୱାରା ନିଜଗୁଣଗୁଡ଼ିକ ପ୍ରକାଶ କରନ୍ତି) ପରାର୍ଥେ (ପରପାଇଁ) ବିତତପ୍ରିଥୁତବିରମ୍ଭଯତ୍ନାଃ (ବିସ୍ତୃତ କାର୍ଯ୍ୟ ଆରମ୍ଭ ପାଇଁ ଯତ୍ନଶୀଳ ହୋଇ) ସ୍ୱାର୍ଥାନ୍ ସମ୍ପାଦୟନ୍ତଃ (ସ୍ୱାର୍ଥ ସାଧନ କରନ୍ତି) ଆକ୍ଷେପରୁକ୍ଷାକ୍ଷରମୁଖର-ମୁଖାନ୍ (ଅନ୍ୟମାନଙ୍କୁ ଆକ୍ଷେପ କରି କହିବାରେ ଅଭ୍ୟସ୍ତ) ଦୁର୍ଜନାନ୍ କ୍ଷାନ୍ତ୍ୟା ଏବ ଦୂଷୟନ୍ତଃ (ଦୁଷ୍ଟମାନଙ୍କୁ କ୍ଷମାଦ୍ୱାରା ଦୂଷିତ କରନ୍ତି) ଜଗତି ଆଶ୍ଚର୍ଯ୍ୟଚର୍ଯ୍ୟାଃ (ଜଗତରେ ଏହିପରି ଆଶ୍ଚର୍ଯ୍ୟପ୍ରକାର ଆଚରଣ କରୁଥିବା ସଜ୍ଜନମାନେ) କସ୍ୟ ବହୁମତାଃ (କାହାର ସମ୍ମାନାସ୍ପଦ) ନ ଅଭ୍ୟର୍ଚ୍ଚନୀୟାଃ (କାହାର ପୂଜ୍ୟ ନହୁଅନ୍ତି) ।

ଅର୍ଥ—ଯେଉଁମାନେ ନମ୍ରତାରେ ଉନ୍ନତ, ପରଗୁଣ କୀର୍ତ୍ତନଦ୍ୱାରା ନିଜ ଗୁଣାବଳୀର ପ୍ରକାଶକ, ପରୋପକାର ନିମିତ୍ତ ଅନବରତ ବିସ୍ତାରିତ କାର୍ଯ୍ୟକ୍ରମ ଦ୍ୱାରା ସ୍ୱକାର୍ଯ୍ୟ ସମ୍ପାଦନଶୀଳ ଓ ଅନ୍ୟମାନଙ୍କୁ ଆକ୍ଷେପ କରି କହିବାରେ ଧୁରନ୍ଧର ଦୁର୍ଜନମାନଙ୍କୁ କ୍ଷମାଦ୍ୱାରାହିଁ ଦୂଷିତ କରନ୍ତି, ସେପରି ଆଶ୍ଚର୍ଯ୍ୟପ୍ରକାର ଆଚରଣ କରୁଥିବା ସଜ୍ଜନଙ୍କୁ କିଏବା ସମ୍ମାନ ନଦେବ ଓ ପୂଜା ନକରିବ ? ତେଣୁ ନମ୍ର, ପରଗୁଣଗାନକାରୀ, ପରୋପକାରୀ ଓ କ୍ଷମାପରାୟଣ ଲୋକଙ୍କୁ ଜଗତରେ ସମସ୍ତେ ସମ୍ମାନ ଦିଅନ୍ତି ଓ ପୂଜା କରନ୍ତି ।

ଭବନ୍ତି ନମ୍ରାସ୍ତରବଃ ଫଳୋଦ୍‌ଗମୈ-
ର୍ନବାମ୍ବୁଭିର୍ଭୂରିବିଲମ୍ବିନୋ ଘନାଃ ।
ଅନୁଦ୍ଧତାଃ ସତ୍‌ପୁରୁଷାଃ ସମୃଦ୍ଧିଭିଃ
ସ୍ୱଭାବ ଏବୈଷ ପରୋପକାରିଣାମ୍ ॥୭୧॥

ଅନ୍ୱୟ—ତରବଃ ଫଳୋଦ୍‌ଗମୈଃ ନମ୍ରାଃ ଭବନ୍ତି (ଫଳ ଧରିଲେ ଗଛଗୁଡ଼ିକ ନଇଁପଡ଼ନ୍ତି) ଘନାଃ (ମେଘମାଳା) ନବାମ୍ବୁଭିଃ (ନୂଆଜଳରେ) ଭୂରିବିଲମ୍ବିନଃ (ଭୂମି ଆଡ଼କୁ ନଇଁ ଆସନ୍ତି) ସତ୍‌ପୁରୁଷାଃ (ସଜ୍ଜନମାନେ) ସମୃଦ୍ଧିଭିଃ (ସମୃଦ୍ଧିସମୟରେ) ଅନୁଦ୍ଧତାଃ (ବିନୀତ ହୁଅନ୍ତି) ଏଷ ଏବ ପରୋପକାରିଣାଂ ସ୍ୱଭାବଃ (ପରୋପକାରୀମାନଙ୍କର ଏହାହିଁ ସ୍ୱଭାବ) ।

ଅର୍ଥ—ଫଳ ଧାରଣ କଲେ ବୃକ୍ଷ ନମ୍ର ହୁଏ । ନବୀନ ଜଳପୂର୍ଣ୍ଣ ହେଲେ ମେଘ ଭୂମି ଉପରକୁ ଲମ୍ବିଆସେ । ସତ୍ପୁରୁଷମାନେ ସମ୍ପତ୍ତି ଲଭକଲେ ଉଦ୍ଧତ ହୁଅନ୍ତି ନାହିଁ, ନମ୍ର ହୁଅନ୍ତି । ସାଧାରଣତଃ ପରୋପକାରୀମାନଙ୍କର ଏହାହିଁ ସ୍ୱଭାବ ।

ଶ୍ରୋତ୍ରଂ ଶ୍ରୁତେନୈବ ନ କୁଣ୍ଡଳେନ
ଦାନେନ ପାଣିର୍ନ ତୁ କଙ୍କଣେନ ।
ବିଭାତି କାୟଃ କରୁଣାପରାଣାଂ
ପରୋପକାରୈର୍ନ ତୁ ଚନ୍ଦନେନ ॥୭୨॥

ଅନ୍ୱୟ—ଶ୍ରୋତ୍ରଂ (କର୍ଣ୍ଣ) ଶ୍ରୁତେନ ଏବ ବିଭାତି (ଶାସ୍ତ୍ର ଶ୍ରବଣଦ୍ୱାରା ଶୋଭାପାଏ) ନ କୁଣ୍ଡଳେନ (କୁଣ୍ଡଳଦ୍ୱାରା ନୁହେଁ) ପାଣିଃ ଦାନେନ (ହସ୍ତ ଦାନ ଦେବାଦ୍ୱାରା) ନ ତୁ କଙ୍କଣେନ (କିନ୍ତୁ କଙ୍କଣଦ୍ୱାରା ନୁହେଁ) କରୁଣା-ପରାଣାଂ (କରୁଣା, ଦୟାଳୁ ହୃଦୟ ଲୋକଙ୍କର) କାୟଃ (ଶରୀର) ପରୋପ-କାରୈଃ ବିଭାତି (ପରୋପକାରଦ୍ୱାରା ଶୋଭିତ ହୁଏ) ନ ତୁ ଚନ୍ଦନେନ (କିନ୍ତୁ ଚନ୍ଦନଦ୍ୱାରା ନୁହେଁ) ।

ଅର୍ଥ—କୁଣ୍ଡଳ ଭୂଷଣଦ୍ୱାରା ନୁହେଁ, ଶାସ୍ତ୍ର ଶ୍ରବଣଦ୍ୱାରା କର୍ଣ୍ଣର ଶୋଭା ବୃଦ୍ଧି ପାଏ । ହସ୍ତ କଙ୍କଣଦ୍ୱାରା ନୁହେଁ, ଦାନ ଦେବାଦ୍ୱାରା ଶୋଭାପାଏ । କରୁଣାପରାୟଣ ଲୋକଙ୍କ ଦେହର ଶୋଭା ଚନ୍ଦନଦ୍ୱାରା ନୁହେଁ, ପରୋପକାର କାର୍ଯ୍ୟଦ୍ୱାରା ଶୋଭିତ ହୁଏ ।

ପାପାନ୍ନିବାରୟତି ଯୋଜୟତେ ହିତାୟ
ଗୁହ୍ୟଂ ନିଗୂହତି ଗୁଣାନ୍ପ୍ରକଟୀକରୋତି ।
ଆପଦ୍ଗତଂ ଚ ନ ଜହାତି ଦଦାତି କାଲେ
ସନ୍ମିତ୍ରଲକ୍ଷଣମିଦଂ ପ୍ରବଦନ୍ତି ସନ୍ତଃ ॥୭୩॥

ଅନ୍ୱୟ—ପାପାତ୍ ନିବାରୟତି (ପାପ କାର୍ଯ୍ୟରୁ ନିବାରଣ କରେ) ହିତାୟ ଯୋଜୟତେ (ମଙ୍ଗଳକର କାର୍ଯ୍ୟରେ ନିଯୁକ୍ତ କରେ) ଗୁହ୍ୟଂ

ନିଗୂହତି (ଗୋପନ କଥା ପ୍ରକାଶ କରେନାହିଁ) ଗୁଣାନ୍ ପ୍ରକଟୀକରୋତି (ଗୁଣାବଳୀ ବାହାରେ ପ୍ରକାଶକରେ) ଆପଦ୍‌ଗତଂ ଚ ନ ଜହାତି (ବିପଦରେ ପଡ଼ିଥିଲେ ଛାଡ଼ିଯାଏ ନାହିଁ) କାଲେ ଦଦାତି (ଆବଶ୍ୟକବେଳେ ଦିଏ) ସନ୍ତଃ (ସଜ୍ଜନମାନେ) ଇଦଂ ସନ୍‌ମିତ୍ରଲକ୍ଷଣଂ ପ୍ରବଦନ୍ତି (ଏହାକୁ ଉତ୍ତମ ମିତ୍ରର ଲକ୍ଷଣ ବୋଲି କହନ୍ତି) ।

ଅର୍ଥ—ଉତ୍ତମ ମିତ୍ର ନିଜ ମିତ୍ରକୁ କୁକାର୍ଯ୍ୟରୁ ବାରଣ କରେ ଓ ମଙ୍ଗଳକର କାର୍ଯ୍ୟରେ ନିଯୁକ୍ତ କରେ । ମିତ୍ରର ଗୋପନ କଥାକୁ ଗୁପ୍ତ କରି ରଖେ ଓ ଗୁଣାବଳୀକୁ ବାହାରେ ପ୍ରକାଶ କରେ । ବିପଦରେ ପଡ଼ିଥିବା-ବେଳେ ଉତ୍ତମ ମିତ୍ର କେବେହେଲେ ଛାଡ଼ିଯାଏ ନାହିଁ । ପୁଣି ଆବଶ୍ୟକବେଳେ ମିତ୍ରକୁ ସାହାଯ୍ୟ କରେ । ସଜ୍ଜନମାନେ ଏଗୁଡ଼ିକୁ ଉତ୍ତମ ମିତ୍ରର ଲକ୍ଷଣ ବୋଲି କହିଛନ୍ତି ।

ପଦ୍ମାକରଂ ଦିନକରୋ ବିକଚୀକରୋତି
ଚଂଦ୍ରୋ ବିକାଶୟତି କୈରବଚକ୍ରବାଳମ୍ ।
ନାଭ୍ୟର୍ଥିତୋ ଜଳଧରୋଽପି ଜଳଂ ଦଦାତି
ସନ୍ତଃ ସ୍ୱୟଂ ପରହିତେ ସୁକୃତାଭିଯୋଗାଃ ॥୭୪॥

ଅନ୍ୱୟ—ଦିନକରଃ (ସୂର୍ଯ୍ୟ) ନ ଅଭ୍ୟର୍ଥିତଃ (ପ୍ରାର୍ଥିତ ନହୋଇ) ପଦ୍ମାକରଂ (ପଦ୍ମ ସମୂହକୁ) ବିକଚୀକରୋତି (ବିକଶିତ କରନ୍ତି) ଚନ୍ଦ୍ରଃ କୈରବଚକ୍ରବାଳଂ ବିକାଶୟତି (ଚନ୍ଦ୍ର କଇଁଫୁଲଗୁଡ଼ିକୁ ପ୍ରସ୍ଫୁଟିତ କରନ୍ତି) ଜଳଧରଃ ଅପି ଜଳଂ ଦଦାତି (ମେଘ ମଧ୍ୟ ଜଳ ଦାନକରେ ) ସନ୍ତଃ (ସଜ୍ଜନମାନେ) ସ୍ୱୟଂ (ନିଜେ) ପରହିତେ (ଅନ୍ୟର ମଙ୍ଗଳ କରିବାରେ) ସୁକୃତାଭିଯୋଗାଃ (ପ୍ରାର୍ଥିତ ହୋଇନଥାନ୍ତି) ।

ଅର୍ଥ—ପ୍ରାର୍ଥନା ବିନା ସୂର୍ଯ୍ୟ ପଦ୍ମଫୁଲଗୁଡ଼ିକୁ ଯେପରି ବିକଶିତ କରନ୍ତି, ଚନ୍ଦ୍ର କଇଁଫୁଲଗୁଡ଼ିକୁ ପ୍ରସ୍ଫୁଟିତ କରନ୍ତି ଏବଂ ମେଘ ମଧ୍ୟ ଜଳଦାନ କରନ୍ତି, ସେହିପରି ସଜ୍ଜନ ବ୍ୟକ୍ତିଗଣ କେହି ପ୍ରାର୍ଥନା ନକଲେ ମଧ୍ୟ ନିଜେ ନିଜେ ଅନ୍ୟର ମଙ୍ଗଳ ସାଧନ ନିମିତ୍ତ ସର୍ବଦା ଅକୁଣ୍ଠିତ ଚିତ୍ତରେ କାର୍ଯ୍ୟ କରନ୍ତି ।

ଏକେ ସତ୍ପୁରୁଷାଃ ପରାର୍ଥଘଟକାଃ ସ୍ୱାର୍ଥଂ ପରିତ୍ୟଜ୍ୟ ଯେ
ସାମାନ୍ୟାସ୍ତୁ ପରାର୍ଥମୁଦ୍ୟମଭୃତଃ ସ୍ୱାର୍ଥାବିରୋଧେନ ଯେ ।
ତେଽମୀ ମାନୁଷରାକ୍ଷସାଃ ପରହିତଂ ସ୍ୱାର୍ଥାୟ ନିଘ୍ନନ୍ତି ଯେ
ଯେ ନିଘ୍ନନ୍ତି ନିରର୍ଥକଂ ପରହିତଂ ତେ କେ ନ ଜାନୀମହେ ॥୭୫॥

ଅନ୍ୱୟ—ଯେ ସ୍ୱାର୍ଥଂ ପରିତ୍ୟଜ୍ୟ (ଯେଉଁମାନେ ସ୍ୱାର୍ଥ ତ୍ୟାଗ କରି) ପରାର୍ଥଘଟକାଃ (ପରୋପକାର କରନ୍ତି) ତେ ଏକେ ସତ୍ପୁରୁଷାଃ (ସେମାନେହିଁ ସତ୍ପୁରୁଷ, ସେମାନଙ୍କ ସଂଖ୍ୟା ମୁଷ୍ଟିମେୟ) ଯେ ସ୍ୱାର୍ଥାବିରୋଧେନ (ଯେଉଁମାନେ ନିଜ ସ୍ୱାର୍ଥର ବିରୋଧ ନକରି) ପରାର୍ଥମ୍ ଉଦ୍ୟମ ଭୃତଃ (ପରୋପକାର ପାଇଁ ଉଦ୍ୟମଶୀଳ) ତେ ତୁ ସାମାନ୍ୟାଃ (ସେମାନଙ୍କ ସଂଖ୍ୟା ଅଳ୍ପ ନୁହେଁ) ଯେ ସ୍ୱାର୍ଥାୟ (ଯେଉଁମାନେ ସ୍ୱାର୍ଥସାଧନ ପାଇଁ) ପରହିତଂ ନିଘ୍ନନ୍ତି (ଅନ୍ୟର ଅନିଷ୍ଟ କରନ୍ତି) ଅମୀ ତେ ମାନୁଷରାକ୍ଷସାଃ (ସେମାନେ ମଣିଷ ରୂପଧାରୀ ରାକ୍ଷସ) ଯେ ନିରର୍ଥକଂ (ଯେଉଁମାନେ ବିନା କାରଣରେ, ଅଯଥା) ପରହିତଂ ନିଘ୍ନନ୍ତି (ପରର ଅମଙ୍ଗଳ କରନ୍ତି) ତେ କେ ନ ଜାନୀମହେ (ସେମାନେ କିଏ ଆମେ ଜାଣିନାହୁଁ) ।

ଅର୍ଥ—ଯେଉଁମାନେ ନିଜର ଦାୟିତ୍ୱ ଓ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଛାଡ଼ି ଅନ୍ୟମାନଙ୍କର କାର୍ଯ୍ୟ ସାଧନ କରନ୍ତି ସେମାନଙ୍କୁ ସଜ୍ଜନ କୁହାଯାଏ । ଜଗତରେ ଏପରି ସଜ୍ଜନ ଅତି ଅଳ୍ପ ଦେଖାଯାନ୍ତି । ସ୍ୱାର୍ଥସାଧନ ସଙ୍ଗେ ସଙ୍ଗେ ଯେଉଁମାନେ ପରୋପକାର କରନ୍ତି ସେପରି ଲୋକଙ୍କ ସଂଖ୍ୟା ଅଳ୍ପ ନୁହେଁ । ନିଜର ସ୍ୱାର୍ଥ ସାଧନ ପାଇଁ ଯେଉଁମାନେ ଅନ୍ୟର ଅମଙ୍ଗଳ କରନ୍ତି, ଅନିଷ୍ଟ କରନ୍ତି ସେମାନେ ମଣିଷରୂପଧାରୀ ରାକ୍ଷସ ରୂପେ ପରିଚିତ । କିନ୍ତୁ ଯେଉଁମାନେ ବିନା କାରଣରେ ଅନ୍ୟର ଅନିଷ୍ଟ କରନ୍ତି ସେମାନେ କି ପ୍ରକାର ଲୋକ ତାହା ଆମେ ଜାଣିପାରୁନାହୁଁ ।

ମନସି ବଚସି କାୟେ ପୁଣ୍ୟପୀୟୂଷପୂର୍ଣ୍ଣା-
ସ୍ତ୍ରିଭୁବନମୁପକାରଶ୍ରେଣୀଭିଃ ପ୍ରୀଣୟନ୍ତଃ ।

ପରଗୁଣପରମାଣୂନ୍ ପର୍ବତୀକୃତ୍ୟ ନିତ୍ୟଂ
ନିଜହୃଦି ବିକସନ୍ତଃ ସନ୍ତି ସନ୍ତଃ କିୟନ୍ତଃ ॥୭୭॥

ଅନ୍ୱୟ—ମନସି ବଚସି କାୟେ (କାୟମନୋବାକ୍ୟରେ) ପୁଣ୍ୟପୀୟୂଷ-ପୂର୍ଣ୍ଣାଃ (ପୁଣ୍ୟ ରୂପକ ଅମୃତ ପୂର୍ଣ୍ଣଥାଏ) ଉପକାରଶ୍ରେଣୀଭିଃ (ଉପକାରଦ୍ୱାରା) ତ୍ରିଭୁବନଂ ପ୍ରୀଣୟନ୍ତଃ (ତିନି ଭୁବନକୁ ସନ୍ତୁଷ୍ଟ କରନ୍ତି) ପରଗୁଣପରମାଣୂନ୍ (ଅନ୍ୟର ଅତି ଅଳ୍ପ ପରମାଣ ଗୁଣକୁ) ପର୍ବତୀ କୃତ୍ୟ (ପର୍ବତାକାର କରି) ନିତ୍ୟଂ (ସର୍ବଦା) ନିଜହୃଦି (ନିଜ ହୃଦୟରେ) ବିକସନ୍ତଃ (ପ୍ରସ୍ଫୁଟିତ କରନ୍ତି) ସନ୍ତଃ କିୟନ୍ତଃ ସନ୍ତି (ସେପରି ସଜ୍ଜନ କେତେଜଣ ଅଛନ୍ତି) ।

ଅର୍ଥ—କାୟମନୋବାକ୍ୟରେ ଯେଉଁମାନେ ପବିତ୍ର କାର୍ଯ୍ୟ କରନ୍ତି, ବିଭିନ୍ନ ପ୍ରକାର ଉପକାରଦ୍ୱାରା ତ୍ରିଭୁବନବାସୀଙ୍କୁ ସନ୍ତୁଷ୍ଟ କରନ୍ତି ଏବଂ ଅନ୍ୟର ଅତି ଅଳ୍ପ ପରମାଣ ଗୁଣକୁ ପର୍ବତାକାର ପରି ବଡ଼ ମନେକରି ନିଜ ହୃଦୟରେ ବିକଶିତ କରନ୍ତି, ସେପରି କେତେଜଣ ସଜ୍ଜନ ଏ ଜଗତରେ ଅଛନ୍ତି ? ସେମାନଙ୍କ ସଂଖ୍ୟା ଅତି ନଗଣ୍ୟ ।

କ୍ଷୀରେଣାତ୍ମଗତୋଦକାୟ ହି ଗୁଣା ଦତ୍ତାଃ ପୁରା ତେଽଖିଳାଃ
କ୍ଷୀରେତ୍ତାପମବେକ୍ଷ୍ୟ ତେନ ପୟସା ସ୍ୱାତ୍ମା କୃଶାନୌ ହୁତଃ ।
ଗନ୍ତୁଂ ପାବକମୁନ୍ମନସ୍ତଦଭବଦ୍ଦୃଷ୍ଟ୍ୱା ତୁ ମିତ୍ରାପଦଂ
ଯୁକ୍ତଂ ତେନ ଜଳେନ ଶାମ୍ୟତି ସତାଂ ମୈତ୍ରୀ ପୁନସ୍ତ୍ୱୀଦୃଶୀ ॥୭୮॥

ଅନ୍ୱୟ—ପୁରା (ପୂର୍ବେ) କ୍ଷୀରେଣ ହି (କ୍ଷୀରହିଁ) ତେ ଅଖିଳାଃ ଗୁଣାଃ (ତାର ସମସ୍ତ ଗୁଣ) ଆତ୍ମଗତୋଦକାୟ ଦତ୍ତାଃ (ଆତ୍ମୀୟ ହୋଇଥିବା ଜଳକୁ ଦେଲା) କ୍ଷୀରେତ୍ତାପମ୍ ଅବେକ୍ଷ୍ୟ (କ୍ଷୀର ଉତ୍ତପ୍ତ ହେବାର ଦେଖି) ତେନ ପୟସା (ସେହି ଜଳ) ଆତ୍ମାହି କୃଶାନୌ ହୁତଃ (ନିଜକୁ ଅଗ୍ନିରେ ଝାସ ଦେଲା) ତୁ (କିନ୍ତୁ) ମିତ୍ରାପଦଂ ଦୃଷ୍ଟ୍ୱା (ବନ୍ଧୁର ବିପଦ ଦେଖି) ତତ୍ (କ୍ଷୀର) ପାବକଂ ଗନ୍ତୁଂ (ଅଗ୍ନିକୁ ଯିବାପାଇଁ) ଉନ୍ମନାଃ ଅଭବତ୍ (ଉତ୍କଣ୍ଠିତ ହେଲା) ପୁନଃ ଜଳେନ ତେନ ଯୁକ୍ତଂ ଶାମ୍ୟତି (ପୁଣି ଜଳସହିତ ଯୁକ୍ତ ହୋଇ

କ୍ଷୀର ଶାନ୍ତ ହେଲା ସତାଂ ମୈତ୍ରୀ ତୁ ଇଦୃଶୀ (ସଜ୍ଜନମାନଙ୍କ ମିତ୍ରତା ଏହିପରି ହୋଇଥାଏ) ।

ଅର୍ଥ—କ୍ଷୀର ପ୍ରଥମେ ତା'ର ସମସ୍ତ ଗୁଣ ନିଜର ଆଶ୍ରିତ ମିତ୍ର ଜଳକୁ ଦେଲା । ଉଭୟ ମିଶି ଏକାକାର ହୋଇଗଲେ । କ୍ଷୀର ଉତ୍ତପ୍ତ ହେବାରୁ ତାର କଷ୍ଟ ଦେଖି ସେହି ପାଣି ନିଜେ ଅଗ୍ନିରେ ଝାସ ଦେଲା ଅର୍ଥାତ୍ ଦୁଧ ସହିତ ଉତୁରି ପଡ଼ିଲା । ବନ୍ଧୁର ବିପଦ ଦେଖି କ୍ଷୀର ଅଗ୍ନିରେ ଝାସ ଦେବାପାଇଁ ଉତ୍କଣ୍ଠିତ ହେଲା । କିନ୍ତୁ ପରେ ସେହି ପାଣି ସହିତ ମିଶିବାରୁ କ୍ଷୀର ଶାନ୍ତ ହୋଇଗଲା । କ୍ଷୀର ଓ ନୀରର ମିତ୍ରତାପରି ସଜ୍ଜନ-ମାନଙ୍କର ମିତ୍ରତା ସମ୍ପାଦିତ ହୋଇଥାଏ ।

ଇତଃ ସ୍ୱପିତି କେଶବଃ କୁଳମିତସ୍ତଦୀୟଦ୍ୱିଷା-
ମିତଶ୍ଚ ଶରଣାର୍ଥିନଃ ଶିଖରିଣାଂ ଗଣା ଶେରତେ ।
ଇତୋଽପି ବଡ଼ବାନଳଃ ସହ ସମସ୍ତସମ୍ବର୍ତ୍ତକୈ-
ରହୋ ବିତତମୂର୍ଜିତଂ ଭରସହଂ ଚ ସିନ୍ଧୋର୍ବପୁଃ ॥୭୮॥

ଅନ୍ୱୟ—ଇତଃ (ଏଇଠି) କେଶବଃ ସ୍ୱପିତି (ବିଷ୍ଣୁ ଶୋଇଛନ୍ତି) ଇତଃ ତଦୀୟଦ୍ୱିଷାଂ କୁଳଂ (ଏଇଠି ତାଙ୍କର ଶତ୍ରୁସ୍ଥାନୀୟ ରାକ୍ଷସମାନେ ଅଛନ୍ତି) ଇତଃ ଚ (ଏଇଠି ମଧ୍ୟ) ଶରଣାର୍ଥିନାଂ ଶିଖରିଣାଂ ଗଣାଃ ଶେରତେ (ଶରଣପ୍ରାର୍ଥୀ ହୋଇ ପର୍ବତମାନେ ଆଶ୍ରୟ ନେଇଛନ୍ତି) ଇତଃ ଅପି (ଏଠାରେ ମଧ୍ୟ) ବଡ଼ବାନଲଃ ସମସ୍ତ ସମ୍ବର୍ତ୍ତକୈଃ ସହ (ବସତି) (ବଡ଼ବାନଲ ନାମକ ଅଗ୍ନି ସମ୍ବର୍ତ୍ତକ ନାମକ ମେଘ ସହିତ ଅଛି) ଅହୋ (ଆଶ୍ଚର୍ଯ୍ୟ) ସିନ୍ଧୋଃ (ସାଗରର) ବପୁ (ଶରୀର) ବିତତଂ (ବିସ୍ତୃତ) ଊର୍ଜିତଂ (ବଳବାନ୍) ଭରସହଂ ଚ (ଅଶେଷ ଭାର ସହିବାରେ ସମର୍ଥ) ।

ଅର୍ଥ—ସମୁଦ୍ର ବକ୍ଷରେ ଭଗବାନ୍ ବିଷ୍ଣୁ ଶୋଇଛନ୍ତି ଏବଂ ତାଙ୍କର ଶତ୍ରୁମାନେ ମଧ୍ୟ ଅଛନ୍ତି । ଶରଣପ୍ରାର୍ଥୀ ହୋଇ ପର୍ବତମାନେ ଆଶ୍ରୟ ନେଇଛନ୍ତି । ବଡ଼ବାନଲ ନାମକ ଅଗ୍ନି ମଧ୍ୟ ସମ୍ବର୍ତ୍ତକ ନାମକ ମେଘଗୋଷ୍ଠୀ ସହିତ ଏଠାରେ ରହିଛି । ତେଣୁ ସମୁଦ୍ରର କଳେବର କେତେ ବଡ଼,

ବଳଶାଳୀ ଓ ସହିଷ୍ଣୁ ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସମୁଦ୍ର ପରି ମହାପୁରୁଷମାନଙ୍କର ଚରିତ ମଧ୍ୟ ବିସ୍ମୟକର ।

ତୃଷ୍ଣାଂ ଛିନ୍ଧି ଭଜ କ୍ଷମାଂ ଜହି ମଦଂ ପାପେରତିଂ ମା କୃଥାଃ
ସତ୍ୟଂ ବ୍ରୂହ୍ୟନୁଯାହି ସାଧୁପଦବୀଂ ସେବସ୍ୱ ବିଦ୍ୱଜ୍ଜନମ୍ ।
ମାନ୍ୟାନ୍ମାନୟ ବିଦ୍ୱିଷୋଽପ୍ୟନୁନୟ ପ୍ରଖ୍ୟାପୟ ସ୍ୱାନ୍‌ଗୁଣାନ୍
କୀର୍ତ୍ତିଂ ପାଳୟ ଦୁଃଖିତେ କୁରୁଦୟାମେତତ୍‌ସତାଂ ଲକ୍ଷଣମ୍ ॥୭୯॥

ଅନ୍ୱୟ—ତୃଷ୍ଣାଂ ଛିନ୍ଧି (ତୃଷ୍ଣା ବା ଲୋଭ ତ୍ୟାଗକର) କ୍ଷମାଂଭଜ (କ୍ଷମାଶୀଳ ହୁଅ) ମଦଂ ଜହି (ଗର୍ବ ତ୍ୟାଗ କର) ପାପେ ରତିଂ ମା କୃଥାଃ (ଖରାପ କାର୍ଯ୍ୟରେ ମନ ବଳାଅ ନାହିଁ) ସତ୍ୟଂ ବ୍ରୂହି (ସତ କୁହ) ସାଧୁ-ପଦବୀମ୍ ଅନୁଯାହି (ମହାଜନମାନଙ୍କ ପନ୍ଥା ଅନୁସରଣ କର) ବିଦ୍ୱଜ୍ଜନଂ ସେବସ୍ୱ (ବିଦ୍ୱାନ୍ ବ୍ୟକ୍ତିର ସେବାକର) ମାନ୍ୟାନ୍ ମାନୟ (ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ସମ୍ମାନ ଦିଅ) ବିଦ୍ୱିଷଃ ଅପି ଅନୁନୟ (ଶତ୍ରୁମାନଙ୍କୁ ମଧ୍ୟ ପ୍ରସନ୍ନ କର) ସ୍ୱାନ୍ ଗୁଣାନ୍ ପ୍ରଖ୍ୟାପୟ (ନିଜର ବିନୟଗୁଣ ପ୍ରକାଶ କର) କୀର୍ତ୍ତିଂ ପାଳୟ (କୀର୍ତ୍ତି ସୁରକ୍ଷିତ ରଖ) ଦୁଃଖିତେ ଦୟାଂ କୁରୁ (ଦୁଃଖୀମାନଙ୍କୁ ଦୟାକର) ଏତତ୍ ସତାଂ ଚେଷ୍ଟିତମ୍ (ଏସବୁ ସାଧୁମାନଙ୍କର ଚେଷ୍ଟାରୂପେ ଅଭିହିତ) ।

ଅର୍ଥ—ଲୋଭ ତ୍ୟାଗକର, ସହିଷ୍ଣୁ ଓ କ୍ଷମାଶୀଳ ହୁଅ, ଗର୍ବ ତ୍ୟାଗକର, ପାପକାର୍ଯ୍ୟରେ ମନ ବଳାଅ ନାହିଁ । ସତ କୁହ, ମହାଜନମାନଙ୍କ ପନ୍ଥା ଅନୁସରଣ କର, ବିଦ୍ୱାନ୍‌ମାନଙ୍କ ସେବାକର, ମାନ୍ୟଗଣ୍ୟ 'ବ୍ୟକ୍ତିମାନଙ୍କୁ ସମ୍ମାନ ଦିଅ । ଶତ୍ରୁମାନଙ୍କୁ ପ୍ରସନ୍ନ ରଖ, ନିଜର ବିନୟଭାବ ପ୍ରକାଶ କର । କୀର୍ତ୍ତିକୁ ସୁରକ୍ଷିତ ରଖ ଓ ଦୀନଦୁଃଖୀମାନଙ୍କ ପ୍ରତି ଦୟାକର । ଏସବୁ ସଜ୍ଜନମାନଙ୍କ ଆଚରଣରୂପେ ଅଭିହିତ ।

କିଂ ତେନ ହେମଗିରିଣା ରଜତାଦ୍ରିଣା ବା
ଯତ୍ରାଶ୍ରିତାଶ୍ଚ ତରବସ୍ତରବସ୍ତ ଏବ ।

ମନ୍ୟାମହେ ମଳୟମେବ ଯଦାଶ୍ରୟେଣ
କଙ୍କୋଳନିମ୍ବକୁଟଜାଅପି ଚନ୍ଦନାଃ ସ୍ୟୁଃ ॥୮୦॥

ଅନ୍ୱୟ—ତେନ ହେମଗିରିଣା (ସେହି ମେରୁପର୍ବତ) ରଜତାଦ୍ରିଣା ବା କିମ୍ (କୈଳାସ ପର୍ବତରେ କି ପ୍ରୟୋଜନ ?) ଯତ୍ର ଆଶ୍ରିତାଃ ଚ ତେ ତରବଃ (ଯେଉଁଠି ଆଶ୍ରୟ କରି ରହିଥିବା ସେହି ତରୁଗଣ) ତରବଃ ଏବ (ସେହି ତରୁ ବା ବୃକ୍ଷ ଅବସ୍ଥାରେ ହିଁ ଅଛନ୍ତି) ମଳୟମ୍ ଏବ ମନ୍ୟାମହେ (ମଳୟ ପର୍ବତକୁ ଆମେ ପର୍ବତ ବୋଲି ମନେକରୁ) ଯତ୍ ଆଶ୍ରୟେଣ (ଯାହାଙ୍କୁ ଆଶ୍ରୟ କରି ରହିବା ଦ୍ୱାରା) କଙ୍କୋଳନିମ୍ବକୁଟଜାଃ ଅପି ଚନ୍ଦନାଃ ସ୍ୟୁଃ (କଙ୍କୋଳ, ନିମ୍ବ, ଓ କୋରୁଅ ଗଛଗୁଡ଼ିକ ମଧ୍ୟ ଚନ୍ଦନ ହୋଇ-ଯାଉଛନ୍ତି) ।

ଅର୍ଥ—ସୁବିଶାଳ ସୁମେରୁ ପର୍ବତ ଓ କୈଳାସ ପର୍ବତ ଥିବାରେ କି ପ୍ରୟୋଜନ ? କାରଣ ସେହି ପର୍ବତକୁ ଆଶ୍ରୟ କରି ରହିଥିବା ବୃକ୍ଷଗଣ ସେହି ବୃକ୍ଷ ହୋଇ ରହିଛନ୍ତି । କିନ୍ତୁ ମଳୟ ପର୍ବତକୁ ଆମେ ଯଥାର୍ଥ ପର୍ବତ ବୋଲି ମନେକରୁ । କାରଣ, ତାକୁ ଆଶ୍ରୟ କରିବାଦ୍ୱାରା କଙ୍କୋଳ, ନିମ୍ବ ଓ କୋରୁଅ ଗଛଗୁଡ଼ିକ ମଧ୍ୟ ଚନ୍ଦନ ହୋଇଯାଉଛନ୍ତି ।

ରତ୍ନୈର୍ମହାର୍ହୈସ୍ତୁତୁଷୁର୍ନ ଦେବା
ନ ଭେଜିରେ ଭୀମବିଷେଣ ଭୀତିମ୍ ।
ସୁଧାଂ ବିନା ନ ପ୍ରୟୟୁର୍ବିରାମଂ
ନ ନିଶ୍ଚିତାର୍ଥାଦ୍ ବିରମନ୍ତି ଧୀରାଃ ॥୮୧॥

ଅନ୍ୱୟ—ଦେବାଃ ମହାର୍ହୈଃ ରତ୍ନୈଃ ନ ତୁତୁଷୁଃ (ଦେବଗଣ ବହୁମୂଲ୍ୟ ରତ୍ନ ପାଇ ମଧ୍ୟ ସନ୍ତୁଷ୍ଟ ହେଲେ ନାହିଁ) ଭୀମବିଷେଣ ଭୀତିଂ ନ ଭେଜିରେ (ଭୟଙ୍କର ବିଷ ପାଇ ମଧ୍ୟ ଡରିଲେ ନାହିଁ) ସୁଧାଂ ବିନା ବିରାମଂ ନ ପ୍ରୟୟୁଃ (ଅମୃତ ନ ପାଇବା ପର୍ଯ୍ୟନ୍ତ ବିରତ ହେଲେ ନାହିଁ । ଧୀରାଃ ନିଶ୍ଚିତାର୍ଥାତ୍ ନ ବିରମନ୍ତି (ଧୈର୍ଯ୍ୟଶୀଳମାନେ ନିର୍ଦ୍ଦିଷ୍ଟ ପ୍ରୟୋଜନରୁ ବିରତ ହୁଅନ୍ତି ନାହିଁ) ।

ଅର୍ଥ—ସମୁଦ୍ର ମନ୍ଥନ ସମୟରେ ଦେବଗଣ ବହୁମୂଲ୍ୟ ରତ୍ନ ପାଇ ମଧ୍ୟ ସନ୍ତୁଷ୍ଟ ହେଲେ ନାହିଁ କି ଉତ୍କଟ ବିଷ ପାଇ ମଧ୍ୟ ଭୟ କଲେ ନାହିଁ । ଅମୃତ ନପାଇବା ପର୍ଯ୍ୟନ୍ତ ମନ୍ଥନ କାର୍ଯ୍ୟରୁ ମଧ୍ୟ ବିରତ ହେଲେନାହିଁ । ତେଣୁ ଧୈର୍ଯ୍ୟଶୀଳ ବ୍ୟକ୍ତିମାନେ ଅଭିଳଷିତ ପଦାର୍ଥ ନପାଇବା ପର୍ଯ୍ୟନ୍ତ ଉଦ୍ୟମରୁ ବିରତ ହୁଅନ୍ତି ନାହିଁ ।

କ୍ୱଚିଦ୍ଭୂମୌ ଶଯ୍ୟଃ କ୍ୱଚିଦପି ଚ ପର୍ଯ୍ୟଙ୍କଶୟନଂ
କ୍ୱଚିଚ୍ଛାକାହାରଃ କ୍ୱଚିଦପି ଚ ଶାଲ୍ୟୋଦନରୁଚିଃ ।
କ୍ୱଚିତ୍କନ୍ଥାଧାରୀ କ୍ୱଚିଦପି ଚ ଦିବ୍ୟାମ୍ବରଧରୋ
ମନସ୍ୱୀ କାର୍ଯ୍ୟାର୍ଥୀ ନ ଗଣୟତି ଦୁଃଖଂ ନ ଚ ସୁଖମ୍ ॥୮୨॥

ଅନ୍ୱୟ—କ୍ୱଚିତ୍ ଭୂମୌ ଶଯ୍ୟା (କେତେବେଳେ ଭୂତଳ ଶଯ୍ୟାଶାୟୀ) କ୍ୱଚିତ୍ ଅପି ଚ ପର୍ଯ୍ୟଙ୍କଶୟନଃ (କେତେବେଳେ ମଧ୍ୟ ଖଟ, ପଲଙ୍କଶାୟୀ ହୁଏ) କ୍ୱଚିତ୍ ଶାକାହାରଃ (କେବେ ଶାକାହାରୀ ତ) କ୍ୱଚିତ୍ ଅପି ଶାଲ୍ୟୋ-ଦନରୁଚିଃ (କେବେ ଅନ୍ନ ଆହାରରେ ତୁଷ୍ଟ ହୁଏ) କ୍ୱଚିତ୍ କନ୍ଥାଧାରୀ (କେତେବେଳେ କନ୍ଥା ଧାରଣ କରେ ତ) କ୍ୱଚିତ୍ ଅପି ଚ ଦିବ୍ୟାମ୍ବରଧରଃ (କେବେ ଉତ୍ତମ ବସ୍ତ୍ର ପରିଧାନ କରେ) ମନସ୍ୱୀ କାର୍ଯ୍ୟାର୍ଥୀ ଚ (ମନସ୍ୱୀ ବ୍ୟକ୍ତି ଓ କାର୍ଯ୍ୟସାଧନ ଅଭିଳାଷୀ) ଦୁଃଖଂ ନ ସୁଖଂ ନ ଗଣୟତି (ଦୁଃଖକୁ କି ସୁଖକୁ ବିଚାର କରନ୍ତି ନାହିଁ) ।

ଅର୍ଥ—ମନସ୍ୱୀ ଓ କାର୍ଯ୍ୟସାଧନ ଅଭିଳାଷୀ ବ୍ୟକ୍ତି କେବେ ତଳେ ତ କେବେ ପଲଙ୍କରେ ଶୁଏ । କେବେ ଶାଗ ଖାଏ ତ କେବେ ଭାତ ଖାଏ ଏବଂ କେବେ ଛିଣ୍ଡା କନ୍ଥା ତ କେବେ ମୂଲ୍ୟବାନ୍ ବସ୍ତ୍ର ପରିଧାନ କରେ । କାର୍ଯ୍ୟ ସାଧନ ପର୍ଯ୍ୟନ୍ତ ସେମାନେ ସୁଖ ଦୁଃଖ ବିଚାର କରନ୍ତି ନାହିଁ ।

ଐଶ୍ୱର୍ଯ୍ୟସ୍ୟ ବିଭୂଷଣଂ ସୁଜନତା ଶୌର୍ଯ୍ୟସ୍ୟ ବାକ୍‌ସଂଯମୋ
ଜ୍ଞାନସ୍ୟୋପଶମଃ ଶ୍ରୁତସ୍ୟ ବିନୟୋ ବିତ୍ତସ୍ୟ ପାତ୍ରେ ବ୍ୟୟଃ ।

ଅକ୍ରୋଧସ୍ତପସଃ କ୍ଷମା ପ୍ରଭବିତୁର୍ଧର୍ମସ୍ୟ ନିର୍ବ୍ୟାଜତା
ସର୍ବେଷାମପି ସର୍ବକାରଣମିଦଂ ଶୀଳଂ ପରଂ ଭୂଷଣମ୍ ॥୮୩॥

ଅନ୍ୱୟ—ସୁଜନତା ଐଶ୍ୱର୍ଯ୍ୟସ୍ୟବିଭୂଷଣମ୍ (ସୌଜନ୍ୟ ଐଶ୍ୱର୍ଯ୍ୟର ଭୂଷଣ) ବାକ୍‌ସଂଯମଃ ଶୌର୍ଯ୍ୟସ୍ୟ (ସଂଯତ ବଚନ ବୀରତ୍ୱର) ଉପଶମଃ ଜ୍ଞାନସ୍ୟ (ଶାନ୍ତ ଜ୍ଞାନର) ବିନୟଃ ଶ୍ରୁତସ୍ୟ (ବିନୟ ଅଧ୍ୟୟନର) ପାତ୍ରେ ବ୍ୟୟଃ ବିତ୍ତସ୍ୟ (ସତ୍ପାତ୍ରରେ ଦାନଦ୍ୱାରା ସମ୍ପତ୍ତିର) ଅକ୍ରୋଧଃ ତପସଃ (କ୍ରୋଧ-ଶୂନ୍ୟତା ତପସ୍ୟାର) କ୍ଷମା ପ୍ରଭବିତୁଃ (କ୍ଷମା ପ୍ରଭୁତ୍ୱର) ନିର୍ବ୍ୟାଜତା ଧର୍ମସ୍ୟ (ନିଷ୍କପଟତା ଧର୍ମର) ଇଦଂ ଶୀଳଂ (ଏହି ସ୍ୱଭାବ) ସର୍ବେଷାମ୍ ଅପି ସର୍ବ-କାରଣଂ (ସମସ୍ତଙ୍କର ମୂଳକାରଣ) ପରଂ ଭୂଷଣମ୍ (ଶ୍ରେଷ୍ଠ ଭୂଷଣ) ।

ଅର୍ଥ—ସୌଜନ୍ୟ ଐଶ୍ୱର୍ଯ୍ୟର, ବାକ୍‌ସଂଯମ ପରାକ୍ରମର, ଶାନ୍ତ ଜ୍ଞାନର, ବିନୟ ଅଧ୍ୟୟନର, ଦାନ ଧନର, ଅକ୍ରୋଧ ତପସ୍ୟାର, କ୍ଷମା ପ୍ରଭୁତ୍ୱର ଓ ନିଷ୍କପଟତା ଧର୍ମର ଭୂଷଣ ରୂପେ ଅଭିହିତ । କିନ୍ତୁ ସତ୍‌ସ୍ୱଭାବ ହେଉଛି ଏସବୁର ମୂଳକାରଣ ଓ ପ୍ରଧାନ ଭୂଷଣ ।

ନିନ୍ଦନ୍ତୁ ନୀତିନିପୁଣା ଯଦି ବା ସ୍ତୁବନ୍ତୁ
ଲକ୍ଷ୍ମୀଃ ସମାବିଶତୁ ଗଚ୍ଛତୁ ବା ଯଥେଷ୍ଟମ୍ ।
ଅଦ୍ୟୈବ ବା ମରଣମସ୍ତୁ ଯୁଗାନ୍ତରେ ବା
ନ୍ୟାଯ୍ୟାତ୍ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ ॥୮୪॥

ଅନ୍ୱୟ—ନୀତିନିପୁଣାଃ (ନୀତିଜ୍ଞ ବ୍ୟକ୍ତିମାନେ) ନିନ୍ଦନ୍ତୁ (ନିନ୍ଦାକରନ୍ତୁ) ଯଦି ବା ସ୍ତୁବନ୍ତୁ (ଅଥବା ସ୍ତୁତିକରନ୍ତୁ, ପ୍ରଶଂସା କରନ୍ତୁ) ଲକ୍ଷ୍ମୀଃ (ସମ୍ପଦ) ସମାବିଶତୁ (ସ୍ୱତଃ ଆସୁ) ଯଥେଷ୍ଟଂ ବା ଗଚ୍ଛତୁ (ଅଥବା ନିଜ ଇଚ୍ଛାରେ ଚାଲିଯାଉ) ଅଦ୍ୟ ଏବ ବା (ଆଜି ହିଁ) ମରଣମ୍ ଅସ୍ତୁ (ମୃତ୍ୟୁ ହେଉ) ବା ଯୁଗାନ୍ତରେ ଅସ୍ତୁ (ଅଥବା ଯୁଗଶେଷରେ ହେଉ) ଧୀରାଃ (ଧୀର ବ୍ୟକ୍ତିମାନେ) ନ୍ୟାଯ୍ୟାତ୍ ପଥଃ (ନ୍ୟାଯ୍ୟ ମାର୍ଗରୁ) ପଦଂ ନ ପ୍ରବିଚଳନ୍ତି (ପାଦେ ହେଲେବି ବିଚଳିତ ହୁଅନ୍ତି ନାହିଁ) ।

ଅର୍ଥ—ନୀତିଜ୍ଞ ବ୍ୟକ୍ତିମାନେ ନିନ୍ଦା କରନ୍ତୁ କି ପ୍ରଶଂସା କରନ୍ତୁ, ଧନ ସମ୍ପଦ ସ୍ୱେଚ୍ଛା ଆସୁ ବା ଯାଉ, ଆଜି ମୃତ୍ୟୁ ହେଉ ବା ଯୁଗାନ୍ତରରେ ମୃତ୍ୟୁ ହେଉ, ପଣ୍ଡିତ ବ୍ୟକ୍ତିମାନେ କେବେହେଲେ ନ୍ୟାୟମାର୍ଗରୁ ବିଚ୍ୟୁତ ହୁଅନ୍ତି ନାହିଁ ।

ଭଗ୍ନାଶସ୍ୟ କରଣ୍ଡପୀଡ଼ିତତନୋର୍ମ୍ଲାନେନ୍ଦ୍ରିୟସ୍ୟ କ୍ଷୁଧା
କୃତ୍ୱାଖୁର୍ବିବରଂ ସ୍ୱୟଂ ନିପତିତୋ ନକ୍ତଂ ମୁଖେ ଭୋଗିନଃ ।
ତୃପ୍ତସ୍ତତ୍ପିଶିତେନ ସତ୍ୱରମସୌ ତେନୈବଯାତଃ ପଥା
ଲୋକାଃ ପଶ୍ୟତ ଦୈବମେବହି ନୃଣାଂ ବୃଦ୍ଧୌକ୍ଷୟେ କାରଣମ୍ ॥୮୫॥

ଅନ୍ୱୟ—ଭଗ୍ନାଶସ୍ୟ (ଖାଇବାକୁ ପାଇ ନଥିବା) କ୍ଷୁଧାମ୍ଳାନେନ୍ଦ୍ରିୟସ୍ୟ (କ୍ଷୁଧାରେ ଶିଥିଳ ଇନ୍ଦ୍ରିୟ) କରଣ୍ଡପୀଡ଼ିତତନୋଃ (ପେଡ଼ାଭିତରେ ଚକିମାରି ଶୋଇଥିବା) ଭୋଗିନଃ (ସର୍ପର) ମୁଖେ (ମୁଖରେ) ଆଖୁଃ (ମୂଷାଟିଏ) ନକ୍ତଂ (ରାତିରେ) ବିବରଂ କୃତ୍ୱା (ବିଲ କରି) ସ୍ୱୟଂ ନିପତିତଃ (ନିଜେ ଆସି ପଡ଼ିଲା) ଅସୌ (ସେହି ସାପ) ତତ୍ ପିଶିତେନ ତୃପ୍ତଃ (ତାହାର ମାଂସରେ ତୃପ୍ତି ଲଭିକରି) ତେନ ଏବ ପଥା (ମୂଷା ଆସିଥିବା ବାଟରେ) ଯାତଃ (ପଳାଇ-ଗଲା) ଲୋକାଃ ପଶ୍ୟତ (ଲୋକମାନେ ଦେଖ) ଦୈବମ୍ ଏବ (ଦୈବହିଁ, ଭାଗ୍ୟହିଁ) ନୃଣାଂ (ଲୋକମାନଙ୍କର) ବୃଦ୍ଧୌ କ୍ଷୟେ ଚ (ଉନ୍ନତି ଓ ଅବନତିର) ହି କାରଣମ୍ (କାରଣ ଅଟେ) ।

ଅର୍ଥ—ଖାଦ୍ୟରେ ନିରାଶ ହୋଇ କ୍ଷୁଧାକ୍ଳିଷ୍ଟ ଦେହନେଇ ପେଡ଼ାରେ ପଡ଼ିରହିଥିବା ସାପମୁହଁରେ ମୂଷାଟିଏ ରାତିରେ ବିଲ କରି ପେଡ଼ା ଫୁଟାଇ ନିଜେ ଆସି ପଡ଼ିଲା । ସାପ ତାକୁ ଖାଇ ତୃପ୍ତିଲଭ କଲା ଓ ମୂଷା ଆସିଥିବା ବାଟରେ ବାହାରକୁ ପଳାଇଗଲା । ତେଣୁ ଆପଣମାନେ ଦେଖନ୍ତୁ, ସବୁକିଛି ଦୈବର ଅଧୀନ । ଦୈବହିଁ ମଣିଷର ଉନ୍ନତି ଓ ଅବନତିର କାରଣ ।

ପାତିତୋଽପି କରାଘାତୈରୁତ୍ପତତ୍ୟେବ କଂନ୍ଦୁକଃ ।
ପ୍ରାୟେଣ ସାଧୁବୃତ୍ତାନାମସ୍ଥାୟିନ୍ୟୋ ବିପତ୍ତୟଃ ॥୮୬॥

ଅନ୍ୱୟ—କଂଦୁକଃ (ବଲ୍) ପାତିତଃ ଅପି (ତଳେ ପଡ଼ିଥିଲେ ମଧ୍ୟ) କରଘାତୈଃ (କର ଆଘାତଦ୍ୱାରା) ଉତ୍ପତତି ଏବ (ପୁଣି ଉପରକୁ ଉଠେ) ସାଧୁବୃତ୍ତାନାଂ (ସାଧୁଭାବାପନ୍ନ ଲୋକଙ୍କର) ବିପତ୍ତୟଃ (ବିପଦ) ପ୍ରାୟେଣ ଅସ୍ଥାୟିନ୍ୟଃ (ପ୍ରାୟ ଅସ୍ଥାୟୀ ହୋଇଥାଏ) ।

ଅର୍ଥ—ତଳେ ପକାଇଦିଆଯାଇଥିବା ବଲ୍ ଯେପରି କର (ହସ୍ତ)ର ଆଘାତଦ୍ୱାରା ପୁଣି ଉପରକୁ ଉଠେ, ସେହିପରି ସାଧୁ ଲୋକମାନଙ୍କର ବିପତ୍ତି ଅସ୍ଥାୟୀ ହୋଇଥାଏ ।

ଆଳସ୍ୟଂ ହି ମନୁଷ୍ୟାଣାଂ ଶରୀରସ୍ଥୋ ମହାନ୍‌ରିପୁଃ ।
ନାସ୍ତ୍ୟୁଦ୍ୟମସମୋ ବଂଧୁର୍ଯଂ କୃତ୍ୱା ନାବସୀଦତି ॥୮୭॥

ଅନ୍ୱୟ—ଆଳସ୍ୟଂ ହି (ଅଳସ ପଣିଆ) ମନୁଷ୍ୟାଣାଂ (ଲୋକମାନଙ୍କ) ଶରୀରସ୍ଥ (ଶରୀରରେ ଥିବା) ମହାନ୍ ରିପୁଃ (ବଡ଼ ଶତ୍ରୁ) ଉଦ୍ୟମସମଃ (ଉଦ୍ୟମ ସଦୃଶ) ବଂଧୁଃ ନାସ୍ତି (ବଂଧୁ ନାହିଁ) ଯଂ କୃତ୍ୱା (ଯାହା ସହିତ ବଂଧୁତା କରି) ନ ଅବସୀଦତି (କେହି ଅବସନ୍ନ ହୁଏନାହିଁ) ।

ଅର୍ଥ—ଶରୀରସ୍ଥିତ ଆଳସ୍ୟହିଁ ମଣିଷର ବଡ଼ ଶତ୍ରୁ । ଉଦ୍ୟମ ପରି ବଂଧୁ ମଣିଷର ଆଉ କେହି ନାହିଁ । ତେଣୁ ଉଦ୍ୟମପରାୟଣ ମଣିଷ କେବେ-ହେଲେ ଅବସାଦ ଅନୁଭବ କରେ ନାହିଁ ।

ଛିନ୍ନୋଽପି ରୋହତି ତରୁଃ କ୍ଷୀଣୋଽପ୍ୟୁପଚୀୟତେ ପୁନଶ୍ଚଂଦ୍ରଃ ।
ଇତି ବିମୃଶନ୍ତଃ ସନ୍ତଃ ସନ୍ତପ୍ୟନ୍ତେ ନ ବିପ୍ଲୁତା ଲୋକେ ॥୮୮॥

ଅନ୍ୱୟ—ତରୁଃ (ବୃକ୍ଷ) ଛିନ୍ନଃ ଅପି (କଟାହୋଇଥିଲେ ମଧ୍ୟ) ପୁନଃ ରୋହତି (ପୁଣି ବଢ଼େ) ଚନ୍ଦ୍ରଃ କ୍ଷୀଣଃ ଅପି (ଚନ୍ଦ୍ର କୃଷ୍ଣପକ୍ଷରେ କ୍ଷୀଣ ହେଲେ ମଧ୍ୟ) ପୁନଃ ଉପଚୀୟତେ (ପୁଣି ବୃଦ୍ଧିଲାଭ କରେ) ସନ୍ତଃ (ସଜ୍ଜନମାନେ) ଇତି ବିମୃଶନ୍ତଃ (ଏହା ବିଚାରି) ବିପ୍ଲୁତାଲୋକେ (ବିପଦ ସମୟରେ) ନ ସନ୍ତପ୍ୟନ୍ତେ (ସନ୍ତପ୍ତ ହୁଅନ୍ତି ନାହିଁ) ।

ଅର୍ଥ—ଗଛକୁ କାଟିଦେଲେ ବି ସେଥିରୁ ପୁଣି ଶାଖା ବାହାରିରେ ଓ ବଢ଼େ । ଚନ୍ଦ୍ର କୃଷ୍ଣପକ୍ଷରେ କ୍ଷୟ ହେଲେବି ଶୁକ୍ଳପକ୍ଷରେ ପୁଣି ବଢ଼େ । ସଜ୍ଜନମାନେ ଏହା ବିଚାର କରି ବିପଦ ସମୟରେ ସନ୍ତପ୍ତ ଓ ଦୁଃଖିତ ହୁଅନ୍ତି ନାହିଁ ।

ନେତା ଯସ୍ୟ ବୃହସ୍ପତିଃ ପ୍ରହରଣଂ ବଜ୍ରଂ ସୁରାଃ ସୈନିକାଃ
ସ୍ୱର୍ଗୋ ଦୁର୍ଗମନୁଗ୍ରହଃ କିଲ ହରେରୈରାବତୋ ବାରଣଃ ।
ଇତ୍ୟୈଶ୍ୱର୍ଯ୍ୟ ବଳାନ୍ୱିତୋଽପି ବଳଭିଦ୍‌ଭଗ୍ନଃ ପରୈଃ ସଙ୍ଗରେ
ତଦ୍‌ବ୍ୟକ୍ତଂ ବରମେବ ଦୈବଶରଣଂ ଧିଗ୍‌ଧିଗ୍ ବୃଥା
ପୌରୁଷମ୍ ॥୮୯॥

ଅନ୍ୱୟ—ଯସ୍ୟ ନେତା ବୃହସ୍ପତିଃ (ଯାହାର ନେତା ହେଉଛନ୍ତି ଗୁରୁ ବୃହସ୍ପତି) ବଜ୍ରଂ ପ୍ରହରଣଂ (ବଜ୍ର ଆୟୁଧ) ସୁରାଃ ସୈନିକାଃ (ଦେବଗଣ ସୈନ୍ୟ) ସ୍ୱର୍ଗଃ ଦୁର୍ଗଂ (ସ୍ୱର୍ଗ ହେଉଛି ଦୁର୍ଗ) ହରେଃ ଅନୁଗ୍ରହଃ କିଲ (ବିଷ୍ଣୁ, ଯାହାକୁ ଅନୁଗ୍ରହ କରନ୍ତି) ଐରାବତଃ ବାରଣଃ (ଐରାବତ ହସ୍ତୀ) ଇତି ଐଶ୍ୱର୍ଯ୍ୟବଳାନ୍ୱିତଃ ଅପି (ଏତେ ଐଶ୍ୱର୍ଯ୍ୟ ଓ ବଳ ଥିଲେ ମଧ୍ୟ) ବଳଭିଦ୍ (ଇନ୍ଦ୍ର) ପରୈଃ (ଶତ୍ରୁମାନଙ୍କ ଦ୍ୱାରା) ସଙ୍ଗରେ (ଯୁଦ୍ଧରେ) ଭଗ୍ନଃ (ପରାଜିତ ହୁଅନ୍ତି) ତଦ୍‌ବ୍ୟକ୍ତଂ ଦୈବଶରଣମ୍ ଏବ ବରମ୍ (ଏଥିରୁ ସ୍ପଷ୍ଟ ହୁଏ, ଭାଗ୍ୟର ଆଶ୍ରୟ ନେବା ଶ୍ରେୟସ୍କର) ପୌରୁଷଂ ବୃଥା (ପୌରୁଷ ବା ପୁରୁଷପଣିଆ ମୂଲ୍ୟହୀନ, ନିରର୍ଥକ) ଧିକ୍ ଧିକ୍ (ତାହାକୁ ଧିକ୍) ।

ଅର୍ଥ—ଯେଉଁ ଦେବରାଜ ଇନ୍ଦ୍ରଙ୍କର ଗୁରୁ ବୃହସ୍ପତି, ବଜ୍ର ଆୟୁଧ, ଦେବତାମାନେ ସୈନ୍ୟ, ସ୍ୱର୍ଗ ଯାହାର ଦୁର୍ଗ, ବିଷ୍ଣୁ ସହାୟକ ଓ ଐରାବତ ହାତୀ ଅଛି, ସେ ଏପରି ଐଶ୍ୱର୍ଯ୍ୟଶାଳୀ ଓ ବଳଶାଳୀ ହୋଇ ମଧ୍ୟ ଯୁଦ୍ଧରେ ଶତ୍ରୁ ଦ୍ୱାରା ପରାଜିତ ହୁଅନ୍ତି । ଏଥିରୁ ବିଧାତାର ଆଶ୍ରୟହିଁ ଶ୍ରେୟସ୍କର ବୋଲି ପ୍ରମାଣିତ ହୁଏ । ତେଣୁ ବୃଥା ପୌରୁଷକୁ ଧିକ୍ ।

କର୍ମାୟତ୍ତଂ ଫଳଂ ପୁଂସାଂ ବୁଦ୍ଧିଃ କର୍ମାନୁସାରିଣୀ ।
ତଥାପି ସୁଧିୟା ଭାବ୍ୟଂ ସୁବିଚାର୍ଯ୍ୟୈବ କୁର୍ବତା ॥୯୦॥

ଅନ୍ୱୟ—ପୁଂସାଂ (ପୁରୁଷମାନଙ୍କର) ଫଳଂ କର୍ମାୟତ୍ତଂ (ସୁଖଦୁଃଖାଦି ଫଳ କର୍ମର ଅଧୀନ) ବୁଦ୍ଧିଃ (ବୁଦ୍ଧିର) କର୍ମାନୁସାରିଣୀ (କର୍ମ ଅନୁଗାମିନୀ) ତଥାପି ସୁବିଚାର୍ଯ୍ୟ ଏବ (ତଥାପି ବିଚାର କରି) କୁର୍ବତା (କାର୍ଯ୍ୟ କରିବା) ସୁଧିୟା ଭାବ୍ୟମ୍ (ପଣ୍ଡିତମାନେ ଭାବିବା ଉଚିତ) ।

ଅର୍ଥ—ପୂର୍ବାର୍ଜିତ କର୍ମ ଅନୁସାରେ ଲୋକ ସୁଖଦୁଃଖାଦି ଫଳ ଭୋଗ-କରେ । ମଣିଷର ବୁଦ୍ଧି ମଧ୍ୟ ସେହି ପୂର୍ବକର୍ମର ଅନୁଗାମିନୀ ହୁଏ । ତଥାପି ବୁଦ୍ଧିମାନ୍ ଲୋକ ଭଲଭାବେ ବିଚାର କରି କାର୍ଯ୍ୟ କରିବା ଉଚିତ ।

ଖଲ୍ୱାଟୋ ଦିବସେଶ୍ୱରସ୍ୟ କିରଣୈଃ ସନ୍ତାପିତୋ ମସ୍ତକେ
ବାଞ୍ଛନ୍ ଦେଶମନାତପଂ ବିଧିବଶାତ୍ତାଳସ୍ୟ ମୂଳଂ ଗତଃ ।
ତତ୍ରାପ୍ୟସ୍ୟ ମହାଫଳେନ ପତତା ଭଗ୍ନଂ ସଶବ୍ଦଂ ଶିରଃ
ପ୍ରାୟୋ ଗଚ୍ଛତି ଯତ୍ର ଭାଗ୍ୟରହିତସ୍ତତ୍ରୈବ ଯାନ୍ତ୍ୟାପଦଃ ॥୮୯॥

ଅନ୍ୱୟ—ଖଲ୍ୱାଟଃ (ଲଣ୍ଡାମୁଣ୍ଡିଆ ଲୋକ) ଦିବସେଶ୍ୱରସ୍ୟ କିରଣୈଃ (ସୂର୍ଯ୍ୟଙ୍କ କିରଣରେ) ମସ୍ତକେ ସଂତାଡ଼ିତଃ (ମୁଣ୍ଡରେ କଷ୍ଟ ପାଇଲା) ଅନାତପଂ ଦେଶଂ ବାଞ୍ଛନ୍ (ଖରା ନଥିବା ସ୍ଥାନ ଖୋଜି) ବିଧିବଶାତ୍ (ଦୈବାତ୍) ତାଳସ୍ୟ ମୂଳଂ ଗତଃ (ତାଳ ଗଛ ମୂଳକୁ ଗଲା) ତତ୍ର ଅପି (ସେଠାରେ ମଧ୍ୟ) ଅସ୍ୟ ପତତା ମହାଫଳେନ (ଏକ ବଡ଼ ତାଳ ଖସି ପଡ଼ିବାରୁ) ଶିରଃ ସଶବ୍ଦଂ ଭଗ୍ନଂ (ମୁଣ୍ଡ ଶବ୍ଦକରି ଫାଟିଗଲା) ଭାଗ୍ୟରହିତଃ (ଭାଗ୍ୟହୀନ) ଯତ୍ର ଗଚ୍ଛତି (ଯୁଆଡ଼େ ଯାଏ) ତତ୍ର ଏବ (ସେଠାକୁ ମଧ୍ୟ) ପ୍ରାୟଃ ଆପଦଃ ଯାନ୍ତି (ପ୍ରାୟ ବିପଦ ଯାଏ) ।

ଅର୍ଥ—ଜନୈକ ଟାଙ୍ଗରା ଲୋକ ଗଲାବେଳେ ଟାଣ ଖରା ତା' ମୁଣ୍ଡକୁ କାଟିବାରୁ ସେ ଛାଇ ଖୋଜି ତାଳଗଛ ମୂଳରେ ପହଂଚିଲା । ସେଠାରେ ଏକ ବଡ଼ ତାଳ ଖସିବାରୁ ତା' ମୁଣ୍ଡ ଫାଟିଗଲା । ତେଣୁ ହତଭାଗା ଯେଉଁ ସ୍ଥାନକୁ

ଗଲେ ମଧ୍ଯ ବିପଦ ପ୍ରାପ୍ତ ସେହି ସ୍ଥାନକୁ ଯାଇଥାଏ । ବିପଦ ହତଭାଗ୍ୟ ବ୍ୟକ୍ତିର ପଛେ ପଛେ ଗୋଡ଼ାଇଥାଏ ।

ଶଶିଦିବାକରୟୋର୍ଗ୍ରହପୀଡ଼ନଂ
ଗଜଭୁଜଙ୍ଗମୟୋରପି ବନ୍ଧନମ୍ ।
ମତିମତାଂ ଚ ବିଲୋକ୍ୟ ଦରିଦ୍ରତାଂ
ବିଧିରହୋ ବଳବାନିତି ମେ ମତିଃ ॥୯୨॥

ଅନ୍ୱୟ—ଶଶିଦିବାକରୟୋଃ (ଚନ୍ଦ୍ର ସୂର୍ଯ୍ୟଙ୍କ) ଗ୍ରହପୀଡ଼ନଂ (ଗ୍ରହପୀଡ଼ା) ଗଜଭୁଜଙ୍ଗମୟୋଃ ଅପି (ହାତୀ ଓ ସର୍ପର ମଧ୍ୟ) ବନ୍ଧନଂ (ବନ୍ଧନ) ମତିମତାଂ ଚ ଦରିଦ୍ରତାଂ (ବିଦ୍ୱାନ୍‌ମାନଙ୍କର ଦାରିଦ୍ର୍ୟ) ବିଲୋକ୍ୟ (ଦେଖି) ଅହୋ ବିଧିଃ ବଳବାନ୍ ଇତି (ବିଧାତାହିଁ ବଳବାନ୍ ବୋଲି) ମେ (ମୋର) ମତିଃ (ବିଚାର, ମନେହେଉଛି) ।

ଅର୍ଥ—ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ରାହୁଗ୍ରହ ଜନିତ ଦୁଃଖ, ହାତୀ ଓ ସର୍ପପରି ଜୀବର ବନ୍ଧନ, ବିଜ୍ଞମାନଙ୍କର ଦାରିଦ୍ର୍ୟ ଦେଖି ମୁଁ ଭାବୁଛି ବିଧିହିଁ ସବୁଠାରୁ ବଳବାନ୍ ।

ସୃଜତି ତାବଦଶେଷଗୁଣାକରଂ
ପୁରୁଷରତ୍ନମଲଙ୍କରଣଂ ଭୁବଃ ।
ତଦପି ତତ୍‌କ୍ଷଣ-ଭଙ୍ଗି କରୋତି ଚେ-
ଦହହ କଷ୍ଟମପଣ୍ଡିତତା ବିଧେଃ ॥୯୩॥

ଅନ୍ୱୟ—ଅଶେଷଗୁଣାକରଂ (ଗୁଣର ଆକର, ଖଣିସ୍ୱରୂପ) ଭୁବଃ ଅଲଙ୍କରଣଂ (ପୃଥିବୀର ଅଳଙ୍କାର ସଦୃଶ) ପୁରୁଷରତ୍ନଂ (ପୁରୁଷ ରୂପକ ରତ୍ନକୁ) ତାବତ୍ ସୃଜତି (ସୃଷ୍ଟି କରୁଛି) ତତ୍ ଅପି (ତାକୁ ମଧ୍ୟ) କ୍ଷଣଭଙ୍ଗି (ନଶ୍ୱର, କ୍ଷଣସ୍ଥାୟୀ) କରୋତି ଚେତ୍ (ଯଦି କରେ) ଅହହ ବିଧେଃ (ହାୟ ବିଧାତାର) ଅପଣ୍ଡିତତା (ମୂର୍ଖତା) କଷ୍ଟମ୍ (ଦୁଃଖଦାୟକ) ।

ଅର୍ଥ—ବିଧାତା ବହୁ ଗୁଣର ଆଧାର, ପୃଥିବୀର ଅଳଙ୍କାର ସ୍ୱରୂପ ପୁରୁଷରତ୍ନ ସୃଷ୍ଟି କରୁଛୁ ଏବଂ ତାକୁ ପୁଣି କ୍ଷଣସ୍ଥାୟୀ କରୁଛୁ । ବିଧାତାର ଏପରି ମୂର୍ଖତା ବଡ଼ ଦୁଃଖଦାୟକ । କାରଣ, କେହି ଜଣେ ଧାରଣ କରିଥିବା ସୁନ୍ଦର ବସ୍ତୁକୁ ନଷ୍ଟ କରେନାହିଁ । କିନ୍ତୁ ଯେ ନଷ୍ଟକରେ ତାକୁହିଁ ସମସ୍ତେ ମୂର୍ଖ ବୋଲି କହନ୍ତି ।

ପତ୍ରଂ ନୈବ ଯଦା କରୀରବିଟପେ ଦୋଷୋ ବସନ୍ତସ୍ୟ କିଂ
ନୋଲୂକୋଽପ୍ୟବଲୋକତେ ଯଦି ଦିବା ସୂର୍ଯ୍ୟସ୍ୟ କିଂ ଦୂଷଣମ୍ ।
ଧାରା ନୈବ ପତନ୍ତି ଚାତକମୁଖେ ମେଘସ୍ୟ କିଂ ଦୂଷଣଂ
ଯତ୍ପୂର୍ବଂ ବିଧିନା ଲଲାଟଲିଖିତଂ ତନ୍ମାର୍ଜିତୁଂ କଃ କ୍ଷମଃ ॥୯୪॥

ଅନ୍ୱୟ—ଯଦା କରୀରବିଟପେ (ବାଉଁଶ ଗଛରେ ଯେତେବେଳେ) ପତ୍ରଂ ନ ଏବ ଜାତଂ (ପତ୍ର କଅଁଳି ନାହିଁ) ତତ୍ ବସନ୍ତସ୍ୟ ଦୋଷଃ କିଂ (ତାହା କଣ ବସନ୍ତ ଋତୁର ଦୋଷ ?) ଉଲୂକଃ ଅପି ଯଦି ଦିବା ନ ଅବ-ଲୋକତେ) ପେଚା ଯଦି ଦିନରେ ଦେଖିନପାରେ) ସୂର୍ଯ୍ୟସ୍ୟ ଦୂଷଣଂ କିଂ (ତାହା କଣ ସୂର୍ଯ୍ୟଙ୍କର ଦୋଷ ?) ଚାତକସ୍ୟ ମୁଖେ ଧାରାଃ ଏବ ନ ପତନ୍ତି (ଚାତକ ମୁଖରେ ଯଦି ଜଳଧାରା ନ ପଡ଼େ) ମେଘସ୍ୟ ଦୂଷଣଂ କିଂ (ତାହା ମେଘର ଦୋଷ କି ?) ବିଧିନା ପୂର୍ବଂ ଯତ୍ ଲଲାଟଲିଖିତଂ (ବିଧାତା ପୂର୍ବରୁ ଯାହା ଲଲାଟରେ ଲେଖିଛି) ତତ୍ ମାର୍ଜିତୁଂ (ତାହା ଲିଭାଇବାକୁ ବା ଅନ୍ୟଥା କରିବାକୁ) କଃ କ୍ଷମଃ (କିଏ ସମର୍ଥ ?) ।

ଅର୍ଥ—ବାଉଁଶ ଗଛରେ ଯଦି ବସନ୍ତ ଋତୁରେ ପତ୍ର ନ କଅଁଳେ, ତାହା କଣ ବସନ୍ତର ଦୋଷ ? ପେଚା ଯଦି ଦିନରେ ଦେଖି ନପାରେ, ତାହା କଣ ସୂର୍ଯ୍ୟଙ୍କ ଦୋଷ ? ଚାତକ ମୁଖରେ ଜଳଧାରା ନପଡ଼ିଲେ, ତାହା କଣ ମେଘର ଦୋଷ ? ନା, ଏଥିରେ କାହାର ଦୋଷ ନାହିଁ । କାରଣ, ବିଧାତା ପୂର୍ବରୁ ଯାହା କପାଳରେ ଯାହା ଲେଖିଛି, ତାହାକୁ କେହି ପରିବର୍ତ୍ତନ କରିପାରିବ ନାହିଁ ।

ନମସ୍ୟାମୋଦେବାନ୍ନନୁ ହତବିଧେସ୍ତେଽପି ବଶଗା
ବିଧିର୍ବନ୍ଦ୍ୟଃ ସୋଽପି ପ୍ରତିନିୟତକର୍ମୈକଫଲଦ ।
ଫଳଂ କର୍ମାୟତ୍ତଂ କିମ୍‌ମରଗଣୈଃ କିଂ ଚ ବିଧିନା
ନମସ୍ତତ୍‌କର୍ମଭ୍ୟୋ ବିଧିରପି ନ ଯେଭ୍ୟଃ ପ୍ରଭବତି ॥୯୫॥

ଅନ୍ୱୟ—ଦେବାନ୍ ନମସ୍ୟାମଃ (ଦେବତାମାନଙ୍କୁ ନମସ୍କାର କରୁଛୁ) ନନୁ ତେ ଅପି (ସେମାନେ ମଧ୍ୟ) ହତବିଧେଃ ବଶଗାଃ (ଦୁଷ୍ଟ ବିଧାତାର ଅଧୀନ) ବିଧିଃ ବନ୍ଦ୍ୟଃ ଅପି (ବିଧାତା ବନ୍ଦନୀୟ ହେଲେ ମଧ୍ୟ) ସଃ ପ୍ରତିନିୟତ-କର୍ମୈକଫଲଦଃ (ସେ ପୂର୍ବାର୍ଜିତ କର୍ମଫଳ ହିଁ ପ୍ରଦାନ କରେ) ଯଦି ଫଳଂ କର୍ମାୟତ୍ତଂ (ଫଳ ଯଦି କର୍ମର ଅଧୀନ) ଅମରୈଃ କିଂ (ଦେବତା ଆରାଧନାରେ କି ପ୍ରୟୋଜନ) ବିଧିନା ଚ କିଂ (ବିଧାତାକୁ ଆଶ୍ରୟକରି କି ଲାଭ) ବିଧିଃ ଅପି (ବିଧାତା ମଧ୍ୟ) ଯେଭ୍ୟଃ ନ ପ୍ରଭବତି (ଯାହା ଉପରେ ପ୍ରଭାବ ପକାଇପାରେ ନାହିଁ) ତତ୍ କର୍ମଭ୍ୟଃ ନମଃ (ସେହି କର୍ମକୁ ନମସ୍କାର) ।

ଅର୍ଥ—ଆମେ ଦେବତାମାନଙ୍କୁ ନମସ୍କାର କରୁଛୁ । ସେମାନେ ଦୁଷ୍ଟ ବିଧିର ଅଧୀନ । ବିଧାତା ବନ୍ଦନୀୟ ହେଲେ ମଧ୍ୟ ସେ ପୂର୍ବାର୍ଜିତ କର୍ମଫଳ ପ୍ରଦାନ କରନ୍ତି । ଯଦି ସୁଖଦୁଃଖାଦି ଫଳ କର୍ମ ଅନୁସାରେ ମିଳେ ତେବେ ଦେବତା ଆରାଧନାରେ ଓ ବିଧାତାକୁ ଆଶ୍ରୟ କରିବାରେ କି ପ୍ରୟୋଜନ ? ତେଣୁ ବିଧାତା ମଧ୍ୟ ଯାହାକୁ ପ୍ରଭାବିତ କରିପାରେ ନାହିଁ ସେହି କର୍ମକୁ ସମସ୍ତେ ନମସ୍କାର କରିବା ଉଚିତ ।

ବ୍ରହ୍ମା ଯେନ କୁଲାଲବନ୍ନିୟମିତୋ ବ୍ରହ୍ମାଣ୍ଡଭାଣ୍ଡୋଦରେ
ବିଷ୍ଣୁର୍ଯେନ ଦଶାବତାରଗହନେ କ୍ଷିପ୍ତୋ ମହାସଙ୍କଟେ ।
ରୁଦ୍ରୋ ଯେନ କପାଳପାଣିପୁଟକେ ଭିକ୍ଷାଟନଂ କାରିତଃ
ସୂର୍ଯ୍ୟୋ ଭ୍ରାମ୍ୟତି ନିତ୍ୟମେବ ଗଗନେ ତସ୍ମୈ ନମଃ କର୍ମଣେ ॥୯୬॥

ଅନ୍ୱୟ—ବ୍ରହ୍ମା ଯେନ (ବ୍ରହ୍ମା ଯେଉଁ କର୍ମଦ୍ୱାରା) ବ୍ରହ୍ମାଣ୍ଡଭାଣ୍ଡୋଦରେ (ବିଶ୍ୱ ବ୍ରହ୍ମାଣ୍ଡ ରୂପକ ଭାଣ୍ଡରେ) କୁଲାଲବତ୍ ନିୟମିତଃ (କୁମ୍ଭାରପରି ନିଯୁକ୍ତ)

ଯେନ ବିଷ୍ଣୁଃ (ଯାହାଦ୍ୱାରା ବିଷ୍ଣୁ) ଦଶାବତାରଗହ୍ୱନେ (ଦଶ ଅବତାର ରୂପକ ଗହ୍ୱନରେ) ମହାସଙ୍କଟେ କ୍ଷିପ୍ତଃ (ମହାବିପଦରେ ନିପତିତ) ଯେନ (ଯାହାଦ୍ୱାରା) ରୁଦ୍ରଃ (ଶିବ) କପାଳପାଣିପୁଟକେ (ହାତରେ ମଣିଷ ଖପ୍ପର ଧରି) ଭିକ୍ଷାଟନଂ କାରିତଃ (ଭିକ୍ଷା ମାଗି ବୁଲନ୍ତି) ନିତ୍ୟମ୍ ଏବ (ପ୍ରତିଦିନ) ସୂର୍ଯ୍ୟଃ (ରବି) ଗଗନେ ଭ୍ରାମ୍ୟତି (ଆକାଶରେ ପରିଭ୍ରମଣ କରନ୍ତି) ତସ୍ମୈ କର୍ମଣେ (ସେହି କର୍ମକୁ) ନମଃ (ନମସ୍କାର) ।

ଅର୍ଥ—ଯେଉଁ କର୍ମଦ୍ୱାରା ବ୍ରହ୍ମା, ବ୍ରହ୍ମାଣ୍ଡ ରୂପକ ଭାଣ୍ଡ ମଧ୍ୟରେ କୁମ୍ଭାର ହୋଇଛନ୍ତି, ସ୍ୱୟଂ ବିଷ୍ଣୁ ଦଶାବତାର ଧାରଣରେ ମହାଦୁଃଖକୁ ବରଣ କରିଛନ୍ତି, ରୁଦ୍ର ହାତରେ ମଣିଷ ଖପ୍ପର ଧରି ଭିକ୍ଷା ମାଗିଛନ୍ତି ଏବଂ ସୂର୍ଯ୍ୟ ପ୍ରତିଦିନ ଆକାଶରେ ବୁଲୁଛନ୍ତି, ସେହି କର୍ମକୁ ନମସ୍କାର ।

ନୈବାକୃତିଃ ଫଳତି ନୈବ କୁଳଂ ନ ଶୀଳଂ
ବିଦ୍ୟାପି ନୈବ ନ ଚ ଯତ୍ନକୃତାପି ସେବା ।
ଭାଗ୍ୟାନି ପୂର୍ବତପସା ଖଳୁ ସଂଚିତାନି
କାଳେ ଫଳନ୍ତି ପୁରୁଷସ୍ୟ ଯଥୈବ ବୃକ୍ଷାଃ ॥୯୭॥

ଅନ୍ୱୟ—ପୁରୁଷସ୍ୟ (ପୁରୁଷର) ଆକୃତିଃ (ସୁନ୍ଦର ଆକାର) ନ ଫଳତି ଏବ (କିଛି ସୁଫଳ ଦିଏ ନାହିଁ) ନୈବ କୁଳଂ (ସଦ୍‌ବଂଶ ନୁହେଁ) ନ ଶୀଳଂ (ସତ୍‌ସ୍ୱଭାବ ନୁହେଁ) ବିଦ୍ୟା ଅପି ନ ଏବ (ବିଦ୍ୟା ମଧ୍ୟ ନୁହେଁ) ଯତ୍ନକୃତା ସେବା ଅପି ଚ ନ (ବହୁତ ଯତ୍ନରେ କରୁଥିବା ସେବା ମଧ୍ୟ ନୁହେଁ) ପୂର୍ବ-ତପସା (ପୂର୍ବ ତପସ୍ୟା ଦ୍ୱାରା) ସଂଚିତାନି ଭାଗ୍ୟାନି (ସଂଚିତ ଭାଗ୍ୟ) ଯଥା ବୃକ୍ଷା ଏବ କାଳେ ଫଳନ୍ତି (ବୃକ୍ଷ ପରି ଯଥାସମୟରେ ଫଳେ) ।

ଅର୍ଥ—ପୁରୁଷର ସୁନ୍ଦର ରୂପ, ବଂଶ, ସ୍ୱଭାବ, ବିଦ୍ୟା ଓ ଯତ୍ନକୃତ ସେବା (ଚାକିରି) କେହି ତାକୁ ଆଶାନୁରୂପ ସୁଖ ଦେଇପାରନ୍ତି ନାହିଁ । କିନ୍ତୁ ପୂର୍ବ-ତପସ୍ୟାଦ୍ୱାରା ସଞ୍ଚିତ ଭାଗ୍ୟହିଁ ବୃକ୍ଷପରି ଯଥାସମୟରେ ତାକୁ ସୁଫଳ ଦିଅନ୍ତି ।

ବନେ ରଣେ ଶତ୍ରୁଜଳାଗ୍ନି ମଧ୍ୟେ
ମହାର୍ଣ୍ଣବେ ପର୍ବତମସ୍ତକେ ବା ।
ସୁପ୍ତଂ ପ୍ରମତ୍ତଂ ବିଷମସ୍ଥିତଂ ବା
ରକ୍ଷନ୍ତି ପୁଣ୍ୟାନି ପୁରାକୃତାନି ॥୯୮॥

ଅନ୍ୱୟ—ପୁରାକୃତାନି (ପୂର୍ବକୃତ) ପୁଣ୍ୟାନି (ସୁକୃତ) ବନେ (ବଣରେ) ରଣେ (ଯୁଦ୍ଧକ୍ଷେତ୍ରରେ) ଶତ୍ରୁଜଳାଗ୍ନିମଧ୍ୟେ (ଶତ୍ରୁ, ଜଳ ଓ ଅଗ୍ନିମଧ୍ୟରେ) ମହାର୍ଣ୍ଣବେ (ମହାସମୁଦ୍ରରେ) ପର୍ବତମସ୍ତକେ ବା (ଅଥବା ପର୍ବତଶିଖରରେ) ସୁପ୍ତଂ (ଶୋଇଥିବା) ପ୍ରମତ୍ତଂ (ଅସାବଧାନ ଥିବା) ବିଷମସ୍ଥିତଂ ବା (ସଙ୍କଟରେ ଥିବା ବ୍ୟକ୍ତିକୁ) ରକ୍ଷନ୍ତି (ରକ୍ଷାକରେ) ।

ଅର୍ଥ—ପୂର୍ବାର୍ଜିତ ପୁଣ୍ୟଫଳ, ବଣରେ, ରଣରେ, ଶତ୍ରୁ, ଜଳ ଓ ଅଗ୍ନି ମଧ୍ୟରେ, ମହାସମୁଦ୍ରରେ, ପର୍ବତ ଶିଖରରେ ସୁପ୍ତ, ଅସାବଧାନ ଅଥବା ବିପନ୍ନ ବ୍ୟକ୍ତିକୁ ରକ୍ଷାକରେ ।

ଯା ସାଧୂଂଶ୍ଚ ଖଳାନ୍‌କରୋତି ବିଦୁଷୋ ମୂର୍ଖାନ୍‌ହିତାନ୍‌ଦ୍ୱେଷିଣଃ
ପ୍ରତ୍ୟକ୍ଷଂ କୁରୁତେ ପରୋକ୍ଷମମୃତଂ ହାଳାହଳଂ ତତ୍‌କ୍ଷଣାତ୍ ।
ତାମାରାଧୟ ସତ୍‌କ୍ରିୟାଂ ଭଗବତୀଂ ଭୋକ୍ତୁଂ ଫଳଂ ବାଂଛିତଂ
ହେ ସାଧୋ ବ୍ୟସନୈର୍ଗୁଣେଷୁ ବିପୁଳେଷ୍ୱାସ୍ଥାଂ ବୃଥା ମା
କୃଥାଃ ॥୯୯॥

ଅନ୍ୱୟ—ହେ ସାଧୋ ! (ହେ ସଜ୍ଜନ) ବାଂଛିତଂ ଫଳଂ ଭୋକ୍ତୁଂ (ଅଭିଳଷିତ ଫଳ ଭୋଗ କରିବା ପାଇଁ) ତାଂ ଭଗବତୀଂ ସତ୍‌କ୍ରିୟାଂ (ସେହି ଭଗବତୀସ୍ୱରୂପିଣୀ ଉତ୍ତମ କ୍ରିୟାକୁ) ଆରାଧୟ (ସାଧନ କର) ଯା (ଯେଉଁ କାର୍ଯ୍ୟ) ଖଳାନ୍ ଚ ସାଧୂନ୍ (ଖଳମାନଙ୍କୁ ମଧ୍ୟ ସାଧୁ) ମୂର୍ଖାନ୍ ବିଦୁଷଃ (ମୂର୍ଖମାନଙ୍କୁ ପଣ୍ଡିତ) ଦ୍ୱେଷିଣଃ ହିତାନ୍ (ଶତ୍ରୁକୁ ମିତ୍ର) କରୋତି (କରେ) ପରୋକ୍ଷଂ (ଅଦୃଷ୍ଟକୁ) ପ୍ରତ୍ୟକ୍ଷଂ (ପ୍ରତ୍ୟକ୍ଷ) ହାଳାହଳଂ (ମହାବିଷକୁ) ତତ୍‌କ୍ଷଣାତ୍ ଅମୃତଂ କୁରୁତେ (ସଙ୍ଗେ ସଙ୍ଗେ ଅମୃତ କରିଦିଏ) ବୃଥା

ବ୍ୟସନୈଃ (ଅଯଥା ଜିଦ୍ କରି) ବିପୁଲେଷୁ ଗୁଣେଷୁ (ପର୍ଯ୍ୟାପ୍ତ ଗୁଣ ଅର୍ଜନରେ) ଆସ୍ଥାଂ ମା କୃଥାଃ (ଆସ୍ଥା ରଖନାହିଁ) ।

ଅର୍ଥ—ହେ ସଜ୍ଜନ ! ନିଜର ଅଭିଲଷିତ ଫଳ ଭୋଗ କରିବା ପାଇଁ ଭଗବତୀ ସ୍ୱରୂପା ଉତ୍ତମକ୍ରିୟା (କର୍ମ) ସାଧନ କର । କାରଣ, ସତ୍କ୍ରିୟାଦ୍ୱାରା ଦୁଷ୍ଟଲୋକ ସାଧୁ, ମୂର୍ଖଲୋକ ପଣ୍ଡିତ ଓ ଶତ୍ରୁ ମଧ୍ୟ ମିତ୍ର ହୋଇଯାଏ । ସତ୍କାର୍ଯ୍ୟହିଁ ଅଦୃଷ୍ଟକୁ ପ୍ରତ୍ୟକ୍ଷ ଓ ହଳାହଳ ବିଷକୁ ସଙ୍ଗେ ସଙ୍ଗେ ଅମୃତରେ ପରିଣତ କରେ । ତେଣୁ ଅଯଥାରେ ପରିଶ୍ରମ କରି ପର୍ଯ୍ୟାପ୍ତ ଗୁଣ ଅର୍ଜନ କରିବାରେ ଆଦୌ ଆସ୍ଥା ରଖନାହିଁ ।

ଗୁଣବଦଗୁଣବଦ୍‌ବା କୁର୍ବତା କାର୍ଯ୍ୟମାଦୌ
ପରିଣତିରବଧାର୍ଯ୍ୟା ଯତ୍ନତଃ ପଣ୍ଡିତେନ ।
ଅତିରଭସକୃତାନାଂ କର୍ମଣାମାବିପତ୍ତେ-
ର୍ଭବତି ହୃଦୟଦାହୀ ଶଲ୍ୟତୁଲ୍ୟୋ ବିପାକଃ ॥୧୦୦॥

ଅନ୍ୱୟ—ଗୁଣବତ୍ ଅଗୁଣବତ୍ ବା (ଭଲ ବା ମନ୍ଦ) କାର୍ଯ୍ୟଂ କୁର୍ବତା (କାମ କରୁଥିବା) ପଣ୍ଡିତେନ (ବିଜ୍ଞବ୍ୟକ୍ତିଦ୍ୱାରା) ଆଦୌ ଯତ୍ନତଃ (ପ୍ରଥମେ ଯତ୍ନର ସହିତ) ପରିଣତିଃ ଅବଧାର୍ଯ୍ୟା (ପରିଣାମ ଫଳ ବା ଶେଷ ପରିଣତି ବିଷୟ ନିର୍ଦ୍ଧାରଣ କରିବା ଉଚିତ) ଅତିରଭସକୃତାନାଂ (ଅତି ଶୀଘ୍ର କରାଯାଉଥିବା) କର୍ମଣାଂ ବିପାକଃ (କାର୍ଯ୍ୟଗୁଡ଼ିକର ପରିଣାମ) ଆବିପତ୍ତେଃ (ମୃତ୍ୟୁପର୍ଯ୍ୟନ୍ତ) ହୃଦୟଦାହୀ (ହୃଦୟରେ ଦାହଜନକ) ଶଲ୍ୟତୁଲ୍ୟଃ (ଅସ୍ତ୍ରାଘାତ-ପରି) ଭବତି (ହୁଏ) ।

ଅର୍ଥ—ଯେ କୌଣସି କାର୍ଯ୍ୟ ଭଲହେଉ ବା ମନ୍ଦହେଉ, ତାହା କରୁଥିବା ବିଜ୍ଞବ୍ୟକ୍ତି, ପ୍ରଥମେ ସେହି କାର୍ଯ୍ୟର ପରିଣାମ ବା ଶେଷଫଳ ଯତ୍ନର ସହିତ ନିରୂପଣ କରିବା ଉଚିତ । କାରଣ, ଅବିମୃଶ୍ୟଚିତ୍ତଭାବେ ଅତିଶୀଘ୍ର ଯେଉଁ କାର୍ଯ୍ୟ କରାଯାଏ ତା'ର ପରିଣାମ ମୃତ୍ୟୁ ପର୍ଯ୍ୟନ୍ତ ହୃଦୟରେ ଅସ୍ତ୍ରାଘାତ ପରି ଦୁଃଖଦାୟକ ହୁଏ ।

ସ୍ଥାଲ୍ୟାଂ ବୈଦୂର୍ଯ୍ୟମଯ୍ୟାଂ ପଚତି ଚ ଲଶୁନଂ ଚନ୍ଦନୈରିନ୍ଧନୌଘୈଃ
ସୌବର୍ଣ୍ଣୈର୍ଲାଙ୍ଗଲାଗ୍ରୈର୍ବିଲିଖତି ବସୁଧାମର୍କମୂଳସ୍ୟ ହେତୋଃ ।
ଛିତ୍ତ୍ୱା କର୍ପୂରଖଣ୍ଡାନ୍‌ବୃତିମିହ କୁରୁତେ କୋଦ୍ରବାଣାଂ ସମନ୍ତାତ୍
ପ୍ରାପ୍ୟେମାଂ କର୍ମଭୂମିଂ ନ ଚରତି ମନୁଜୋ ଯସ୍ତପୋ
ମନ୍ଦଭାଗ୍ୟଃ ॥୧୦୧॥

ଅନ୍ୱୟ—ଇମାଂ କର୍ମଭୂମିଂ ପ୍ରାପ୍ୟ (ଏହି ମର୍ତ୍ତ୍ୟଭୂମିରେ ଜନ୍ମହୋଇ) ଯଃ ମନୁଜଃ ତପଃ ନ ଚରତି (ଯେଉଁ ଲୋକ ସାଧନା କରେନାହିଁ) ମନ୍ଦଭାଗ୍ୟଃ (ସେ ହତଭାଗା) ଇହ ବୈଦୂର୍ଯ୍ୟମଯ୍ୟାଂ ସ୍ଥାଲ୍ୟାଂ (ଏହି ବୈଦୂର୍ଯ୍ୟମଣି ନିର୍ମିତ ପାତ୍ରରେ) ଚନ୍ଦନୈଃ ଇନ୍ଧନୌଘୈଃ (ଚନ୍ଦନ କାଠଜାଳରେ) ଲଶୁନଂ ଚ ପଚତି (ରସୁଣ ରାନ୍ଧୁଛି) ସୌବର୍ଣ୍ଣୈଃ (ସୁନାରେ ତିଆରି) ଲାଙ୍ଗଲାଗ୍ରୈଃ (ଲଙ୍ଗଳରେ) ଅର୍କମୂଳସ୍ୟ ହେତୋଃ (ଅରଖ ଗଛ ମୂଳ ପାଇବା ନିମିତ୍ତ) ବସୁଧାଂ ବିଲିଖତି (ମାଟି ତାଡ଼ୁଛି) କୋଦ୍ରବାଣାଂ (କୋଦୋ ( ବାଲୁଙ୍ଗା ) ଧାନ କିଆରିର) ସମନ୍ତାତ୍ (ଚାରି ପାଖରେ) କର୍ପୂରଖଣ୍ଡାନ୍ ଛିତ୍ତ୍ୱା (କର୍ପୂରକୁ ଖଣ୍ଡ ଖଣ୍ଡ କରି) ବୃତିଂ (ବାଡ଼ ବା ହିଡ଼) କୁରୁତେ (କରେ) ।

ଅର୍ଥ—ଏହି ମର୍ତ୍ତ୍ୟଲୋକ ହେଉଛି କର୍ମଭୂମି । ଏଠାରେ ଜନ୍ମହୋଇ ଯେଉଁ ଲୋକ ସାଧନା ନକରେ, ସେ ହତଭାଗ୍ୟ ବୋଲି ବିବେଚିତ ହୁଏ । ସେପରି ଲୋକ ଇହଲୋକର ବୈଦୂର୍ଯ୍ୟମଣି ନିର୍ମିତ ପାତ୍ରରେ ଚନ୍ଦନ କାଠ ଜାଳି ରସୁଣ ରାନ୍ଧୁଛି, ସୁନା ଲଙ୍ଗଳରେ ଅରଖ ଗଛର ମୂଳ ପାଇଁ ମାଟି ତାଡ଼ୁଛି ଏବଂ ବାଲୁଙ୍ଗା ଧାନ କିଆରି ଚାରିପାଖରେ କର୍ପୂର ଖଣ୍ଡରେ ହିଡ଼ ଦେଉଛି ବୋଲି କୁହାଯାଏ । ତେଣୁ ବ୍ୟର୍ଥ ପ୍ରୟାସ ନକରି ସତ୍କର୍ମ ସାଧନାରେ ମନୋନିବେଶ କରିବା ଉଚିତ ।

ମଜ୍ଜତ୍ୱମ୍ଭସି ଯାତୁ ମେରୁଶିଖରଂ ଶତ୍ରୁଞ୍ଜୟତ୍ୱାହବେ
ବାଣିଜ୍ୟଂ କୃଷିସେବନାଦିସକଳା ବିଦ୍ୟାଃ କଳାଃ ଶିକ୍ଷତୁ ।

ଆକାଶଂ ବିପୁଳଂ ପ୍ରଯାତୁ ଖଗବତ୍‌କୃତ୍ୱା ପ୍ରଯତ୍ନଂ ପରଂ
ନାଭାବ୍ୟଂ ଭବତୀହ କର୍ମବଶତୋ ଭାବ୍ୟସ୍ୟ ନାଶଃ କୁତଃ ॥୧୦୨॥

ଅନ୍ୱୟ—ଅମ୍ବୁଧି ମଜ୍ଜତୁ (ଲୋକ ପାଣିରେ ବୁଡ଼ୁ) ମେରୁଶିଖରଂ ଯାତୁ (ପର୍ବତ ଶିଖରକୁ ଯାଉ) ଆହବେ (ଯୁଦ୍ଧରେ) ଶତ୍ରୂନ୍ ଜୟତୁ (ଶତ୍ରୁମାନଙ୍କୁ ଜୟକରୁ) ବାଣିଜ୍ୟଂ (ବେପାର) କୃଷି ସେବନେ (ଚାଷ ଓ ଚାକିରି କରୁ) ସକଳାଃ ବିଦ୍ୟାଃ (ସମସ୍ତ ବିଦ୍ୟା) କଳାଃ ଚ (କଳା ମଧ୍ୟ) ଶିକ୍ଷିତାମ୍ (ଶିକ୍ଷା କରୁ) ପ୍ରଯତ୍ନଂ କୃତ୍ୱା (ଚେଷ୍ଟାକରି) ବିପୁଳମ୍ ଆକାଶଂ (ବିସ୍ତୀର୍ଣ୍ଣ ଆକାଶରେ) ଖଗବତ୍ (ପକ୍ଷୀପରି) ପ୍ରଯାତୁ (ବିଚରଣ କରୁ) ପରଂ (କିନ୍ତୁ) ଇହ (ଏଠାରେ) ଅଭାବ୍ୟଂ ନ ଭବତି (ଯାହା ହେବାର ନୁହେଁ ତାହା ହେବ ନାହିଁ) କର୍ମବଶତଃ (ଭାଗ୍ୟବଶତଃ) ଭାବ୍ୟସ୍ୟ (ଯାହା ହେବାର କଥା) ନାଶଃ କୁତଃ (ତାର ବିନାଶ ହେବ କି ?) ।

ଅର୍ଥ—ମଣିଷ ପାଣିରେ ବୁଡ଼ୁ, ପର୍ବତ ଶିଖରକୁ ଯାଉ, ଯୁଦ୍ଧରେ ବିଜୟୀ ହେଉ, ବାଣିଜ୍ୟ, କୃଷି ବା ଚାକିରି କରୁ, ସମସ୍ତବିଦ୍ୟା ଓ କଳାକୌଶଳ ଶିକ୍ଷାକରୁ, ଚେଷ୍ଟାକରି ଆକାଶରେ ପକ୍ଷୀପରି ଉଡ଼ୁ ପଛକେ ତାର ଯାହା ନ ହେବାର କଥା ହେବନାହିଁ କି ଯାହା ହେବାର କଥା ତାହାର ବିନାଶ ହେବନାହିଁ ।

ଭୀମଂ ବନଂ ଭବତି ତସ୍ୟ ପୁରଂ ପ୍ରଧାନଂ
ସର୍ବୋଜନଃ ସୁଜନତାମୁପଯାତି ତସ୍ୟ ।
କୃତ୍ସ୍ନା ଚ ଭୂର୍ଭବତି ସନ୍ନିଧିରତ୍ନପୂର୍ଣ୍ଣା
ଯସ୍ୟାସ୍ତି ପୂର୍ବସୁକୃତଂ ବିପୁଳଂ ନରସ୍ୟ ॥୧୦୩॥

ଅନ୍ୱୟ—ଯସ୍ୟ ନରସ୍ୟ (ଯେଉଁ ଲୋକର) ବିପୁଳଂ (ପର୍ଯ୍ୟାପ୍ତ) ପୂର୍ବ-ସୁକୃତମ୍ ଅସ୍ତି (ପୂର୍ବଜନ୍ମାର୍ଜିତ ପୁଣ୍ୟଫଳ ଅଛି) ତସ୍ୟ (ତାହାର) ଭୀମଂ ବନଂ (ଭୟଙ୍କର ବଣ) ପ୍ରଧାନଂ ପୁରଂ (ଉତ୍ତମ ନଗର ପରି) ଭବତି (ହୁଏ) । ସର୍ବଃ ଜନଃ (ସବୁ ଲୋକ) ତସ୍ୟ ସୁଜନତାମ୍ (ତାହାର ଆତ୍ମୀୟ)

ଉପଯାତି (ହୁଅନ୍ତି) କୃତ୍ସ୍ନା ଚ ଭୂଃ (ମାଟି ଖୋଳିବାମାନେ ପୃଥିବୀ) ସନ୍ନିଧି-ରତ୍ନପୂର୍ଣ୍ଣା ଭବତି (ଶ୍ରେଷ୍ଠ ମଣି ମାଣିକ୍ୟାଦି ରତ୍ନରେ ପୂର୍ଣ୍ଣ ହୋଇଥାଏ) ।

ଅର୍ଥ—ଯେଉଁ ଲୋକର ପୂର୍ବଜନ୍ମାର୍ଜିତ ପର୍ଯ୍ୟାପ୍ତ ପୁଣ୍ୟ ଅଛି ତା'ଠାରେ ଶ୍ୱାପଦସଙ୍କୁଳ ବନଭୂମି ମଧ୍ୟ ସର୍ବୋତ୍କୃଷ୍ଟ ନଗର ପରି ହୁଏ । ସମସ୍ତେ ତା'ର ଆତ୍ମୀୟ ହୋଇଯାଆନ୍ତି । ମାଟି ଖୋଳିବାମାନେ ସେ ସର୍ବଦା ଲୁକ୍କାୟିତ ଧନରତ୍ନ ଲାଭକରିଥାଏ ।

———

# ପରିଶିଷ୍ଟ

## (କ) ଭେଙ୍କଟେଶ୍ବର ପ୍ରେସ, ୧୯୦୭ ସଂସ୍କରଣର ଅଧିକ ଶ୍ଳୋକ—

କୋ ଲାଭୋ ଗୁଣିସଙ୍ଗମଃ କିମସୁଖଂ ପ୍ରାଜ୍ଞେତରୈଃ ସଙ୍ଗତିଃ
କା ହାନିଃ ସମୟଚ୍ୟୁତିର୍ନିପୁଣତା କା ଧର୍ମତତ୍ତ୍ୱେ ରତିଃ ।
କଃ ଶୂରୋ ବିଜିତେନ୍ଦ୍ରିୟଃ ପ୍ରିୟତମା କାନୁବ୍ରତା କିଂ ଧନଂ
ବିଦ୍ୟା କିଂ ସୁଖମପ୍ରବାସଗମନଂ ରାଜ୍ୟଂ କିମାଜ୍ଞା ଫଳମ୍ ॥୧୦୪॥

ଅର୍ଥ—ଏ ସଂସାରରେ ଗୁଣିଜନ ସହିତ ସମ୍ପର୍କକୁ ଲାଭ ଓ ମୂର୍ଖମାନଙ୍କ ସହିତ ସମ୍ପର୍କକୁ ଦୁଃଖ କୁହାଯାଏ । ସେହିପରି ଅଯଥା ସମୟ ନାଶକୁ କ୍ଷତି, ଧର୍ମତତ୍ତ୍ୱରେ ଅନୁରାଗକୁ ନିପୁଣତା, ଜିତେନ୍ଦ୍ରିୟ ବ୍ୟକ୍ତିକୁ ବୀର, ସୁଖଦୁଃଖରେ ଅନୁଗାମିନୀକୁ ପ୍ରିୟତମା, ବିଦ୍ୟାକୁ ଧନ, ପ୍ରବାସ ନଯିବାକୁ ସୁଖ ଓ ଆଦେଶର ସଫଳତାକୁ ରାଜ୍ୟ ବୋଲି ବିବେଚନା କରାଯାଏ ।

ଅପ୍ରିୟବଚନଦରିଦ୍ରୈଃ ପ୍ରିୟବଚନାଢ୍ୟୈଃ ସ୍ୱଦାରପରିତୁଷ୍ଟୈଃ ।
ପରପରିବାଦନିବୃତ୍ତୈଃ କ୍ୱଚିତ୍‌କ୍ୱଚିନ୍ମଣ୍ଡିତା ବସୁଧା ॥୧୦୫॥

ଅର୍ଥ—କେବେହେଲେ ଅପ୍ରିୟ କଥା କହୁନଥିବା, ସର୍ବଦା ମଧୁରଭାଷୀ, ନିଜ ପତ୍ନୀଠାରେ ସନ୍ତୁଷ୍ଟ ଓ ଅନ୍ୟର ନିନ୍ଦା କରୁନଥିବା ବ୍ୟକ୍ତି ଏ ସଂସାରରେ କ୍ୱଚିତ୍‌ପରିଦୃଷ୍ଟ ହୁଅନ୍ତି ।

କଦର୍ଥିତସ୍ୟାପି ହି ଧୈର୍ଯ୍ୟବୃତ୍ତେ-
ର୍ନ ଶକ୍ୟତେ ଧୈର୍ଯ୍ୟଗୁଣଃ ପ୍ରମାଷ୍ଟୁର୍ମ୍ ।
ଅଧୋମୁଖସ୍ୟାପି କୃତସ୍ୟ ବହ୍ନେ-
ର୍ନାଧଃ ଶିଖା ଯାତି କଦାଚିଦେବ ॥୧୦୬॥

ଅର୍ଥ—କଦର୍ଥ୍ୟ ଅବସ୍ଥାରେ ଥାଇ ବହୁ ଦୁଃଖ ଦୁର୍ଦ୍ଦଶା ଭୋଗକଲେ ମଧ୍ଯ ଧୈର୍ଯ୍ୟଶୀଳ ବ୍ୟକ୍ତିର ଧୈର୍ଯ୍ୟଗୁଣ ନଷ୍ଟ ହୋଇଯାଏନାହିଁ । କାରଣ ଅଗ୍ନିକୁ ତଳମୁହାଁ କରି ରଖିଲେ ବି ତାର ଶିଖା କେବେହେଲେ ତଳକୁ ଯାଏନାହିଁ । ଅଗ୍ନିପରି ଧୈର୍ଯ୍ୟଶୀଳ ବ୍ୟକ୍ତି ନିଜ ଗୁଣ ପରିତ୍ୟାଗ କରନ୍ତି ନାହିଁ ।

କାନ୍ତାକଟାକ୍ଷବିଶିଖା ନ ଦହନ୍ତି ଯସ୍ୟ
ଚିତ୍ତଂ ନ ନିର୍ଦ୍ଦହତି କୋପକୃଶାନୁତାପଃ ।
କର୍ଷନ୍ତି ଭୂରିବିଷୟାଶ୍ଚ ନ ଲୋଭପାଶୈ
ର୍ଲୋକତ୍ରୟଂ ଜୟତି କୃତ୍ସ୍ନମିଦଂ ସ ଧୀରଃ ॥୧୦୭॥

ଅର୍ଥ—ଯୁବତୀ ନାରୀର କଟାକ୍ଷରୂପକ ବାଣରେ ଯେ ଛିନ୍ନ ହୁଅନ୍ତି ନାହିଁ, କ୍ରୋଧ ରୂପକ ଅଗ୍ନି ତାପ ଯାହାର ହୃଦୟକୁ ଦଗ୍ଧ କରିପାରେ ନାହିଁ ଏବଂ ବହୁ ଧନସମ୍ପଦ ଯେଉଁ ବ୍ୟକ୍ତିର ଚିତ୍ତକୁ ଲୋଭାକୃଷ୍ଟ କରେନାହିଁ, ସେହି ବ୍ୟକ୍ତିକୁ ଧୀର କୁହାଯାଏ । ଏହି ତିନି ଲୋକକୁ (ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ) ସେ ହିଁ କେବଳ ଜୟକରିପାରେ ।

ବହ୍ନିସ୍ତସ୍ୟ ଜଳାୟତେ ଜଳନିଧିଃ କୁଲ୍ୟାୟତେ ତତ୍କ୍ଷଣାତ୍
ମେରୁଃ ସ୍ୱଳ୍ପଶିଳାୟତେ ମୃଗପତିଃ ସଦ୍ୟଃ କୁରଙ୍ଗାୟତେ ।
ବ୍ୟାଳୋ ମାଲ୍ୟଗୁଣାୟତେ ବିଷରସଃ ପୀୟୂଷବର୍ଷାୟତେ
ଯସ୍ୟାଙ୍ଗେଽଖିଳଲୋକବଲ୍ଲଭତମଂ ଶୀଳଂ ସମୁନ୍ମୀଳତି ॥୧୦୮॥

ଅର୍ଥ—ସର୍ବଜନପ୍ରିୟ ସତ୍‌ସ୍ୱଭାବ ଯାହାଠାରେ ଥାଏ, ସେହି ବ୍ୟକ୍ତି ପାଖରେ ଅଗ୍ନି ଜଳପରି ଶୀତଳ ହୁଏ, ସମୁଦ୍ର ତତ୍କ୍ଷଣାତ୍ ଶ୍ରେଷ୍ଠ ପାଣିନାଳ ପରି କ୍ଷୁଦ୍ର ମନେହୁଏ ଓ ମେରୁ ପର୍ବତ କ୍ଷୁଦ୍ର ଶିଳାଖଣ୍ଡ ପରି ବୋଧହୁଏ । ସତ୍‌ସ୍ୱଭାବସମ୍ପନ୍ନ ବ୍ୟକ୍ତି ଆଗରେ ସିଂହ ମଧ୍ଯ ମୃଗପରି ଆଚରଣ କରେ, ସର୍ପ ମାଳାପରି ପ୍ରିୟ ହୁଏ ଓ ବିଷ ଅମୃତ ବୃଷ୍ଟି କରେ ।

ଏକେନାପି ହି ଶୂରେଣ ପାଦାକ୍ରାନ୍ତଂ ମହୀତଳମ୍ ।
କ୍ରିୟତେ ଭାସ୍କରେଣେବ ପରିସ୍ଫୁରିତ ତେଜସା ॥୧୦୯॥

ଅର୍ଥ—ସୂର୍ଯ୍ୟ ଯେପରି ନିଜର ଦୀପ୍ତ ତେଜୋରାଶିଦ୍ୱାରା ସମଗ୍ର ପୃଥିବୀକୁ ଆଲୋକିତ କରନ୍ତି, ସେହିପରି ଜଣେ ମାତ୍ର ତେଜସ୍ୱୀ ବୀର ସସାଗରା ପୃଥିବୀରେ ଆଧିପତ୍ୟ ବିସ୍ତାର କରିଥାଏ ।

ଲଜ୍ଜାଗୁଣୌଘଜନନୀଂ ଜନନୀମିବ ସ୍ୱା-
ମତ୍ୟନ୍ତଶୁଦ୍ଧହୃଦୟାମନୁବର୍ତ୍ତମାନାମ୍ ।
ତେଜସ୍ୱିନଃ ସୁଖମସୂନପି ସଂତ୍ୟଜନ୍ତି
ସତ୍ୟବ୍ରତବ୍ୟସନିନୋ ନ ପୁନଃ ପ୍ରତିଜ୍ଞାମ୍ ॥୧୧୦॥

ଅର୍ଥ—ତେଜସ୍ୱୀ ଓ ସତ୍ୟପରାୟଣ ବ୍ୟକ୍ତି, ଜୀବନ ଦେଇ ନିଜର ମା'କୁ ରକ୍ଷା କଲାପରି, ଲଜ୍ଜା, ଦୟାଦି ଗୁଣସମୂହର ଉତ୍ପାଦୟିତ୍ରୀ, ଚିତ୍ତର ବିଶୁଦ୍ଧି-କାରିଣୀ ଓ ସର୍ବାଧିକ ପ୍ରିୟା ସ୍ୱପ୍ରତିଜ୍ଞାକୁ ରକ୍ଷା କରିବା ପାଇଁ ଆନନ୍ଦରେ ଆତ୍ମବଳି ଦେବାକୁ କୁଣ୍ଠିତ ହୁଅନ୍ତି ନାହିଁ ।

**(ଖ) ଆନନ୍ଦାଶ୍ରମ ପ୍ରେସ, ୧୯୭୭ ସଂସ୍କରଣର ଅଧିକ ଶ୍ଳୋକ—**

ବିପଦ୍ୟୁଚ୍ଚୈଃ ସ୍ଥେୟଂ ପଦମନୁବିଧେୟଂ ଚ ମହତାଂ
ପ୍ରିୟା ନ୍ୟାଯ୍ୟା ବୃତ୍ତିର୍ମଳିନମସୁଭଙ୍ଗେଽପ୍ୟସୁକରମ୍ ।
ଅସନ୍ତୋ ନାଭ୍ୟର୍ଥ୍ୟାଃ ସୁହୃଦପି ନ ଯାଚ୍ୟଃ କୃଶଧନଃ
ସତାଂ କେନୋଦ୍ଦିଷ୍ଟଂ ବିଷମମସିଧାରାବ୍ରତମିଦମ୍ ॥୧୧୧॥

ଅର୍ଥ—ବିପଦ କାଳରେ ଧୈର୍ଯ୍ୟଧାରଣ କରି ମହାଜନମାନଙ୍କ ପନ୍ଥା ଅନୁସରଣ କରିବା ଉଚିତ । ସର୍ବଦା ପ୍ରିୟ ଓ ନ୍ୟାୟସଙ୍ଗତ କାର୍ଯ୍ୟ କରିବା ଉଚିତ । ପ୍ରାଣ ଗଲେବି ନିନ୍ଦିତକର୍ମ କରିବା ଅନୁଚିତ । ଅସଜ୍ଜନଠାରେ ପ୍ରାର୍ଥୀ ହେବା ଓ ନିର୍ଦ୍ଧନ ମିତ୍ରଠାରେ ଅର୍ଥ ପ୍ରାର୍ଥନା କରିବା ଉଚିତ ନୁହେଁ ।

ଅସିଧାର ପରି ତୀକ୍ଷ୍ଣ ଓ ଦୁଃସାଧ୍ୟ ଓ ସଜ୍ଜନ ଆଚରଣୀୟ ଏହି ବ୍ରତ କିଏ ଉପଦେଶ ଦେଇଛି । (ପରିବର୍ତ୍ତିତ ଆକାରରେ ଏହା ୧୨୭ ସଂଖ୍ୟାରେ ଅଛି)

ପ୍ରାୟଃ କଂଦୁକପାତେନୋତ୍ପତତ୍ୟାର୍ଯ୍ୟ ପତନ୍ନପି ।
ତଥା ତ୍ୱନାର୍ଯ୍ୟଃ ପତତି ମୃତ୍ପିଣ୍ଡପତନଂ ଯଥା ॥୧୧୨॥

ଅର୍ଥ—କଂଦୁକ (ବଲ୍) ଯେପରି ତଳେ ପଡ଼େ ଓ ଉପରକୁ ଉଠେ ସେହିପରି ଆର୍ଯ୍ୟ (ସଜ୍ଜନ) ବ୍ୟକ୍ତି ମଧ୍ୟ ବିପଦର ସମ୍ମୁଖୀନ ହୁଅନ୍ତି ଓ ସମ୍ପଦ ଲଭ କରନ୍ତି । କିନ୍ତୁ ଅନାର୍ଯ୍ୟଲୋକ ମାଟି ଘଟ ତଳେ ପଡ଼ିଲାପରି ଅଧୋଗତି ଲଭକରନ୍ତି । ତଳେ ପଡ଼ିଯାଇଥିବା ମାଟିଘଟ ଯେପରି ଉପରକୁ ଉଠେନାହିଁ, ସେହିପରି ଦୁର୍ଜନ ବ୍ୟକ୍ତିର ଉତ୍ଥାନ ଘଟେ ନାହିଁ ।

ଉଦନ୍ୱଚ୍ଛିନ୍ନା ଭୂଃ ସ ଚ ନିଧିରପାଂ ଯୋଜନଶତୈଃ
ସଦା ପାନ୍ଥଃ ପୂଷା ଗଗନପରିମାଣଂ କଳୟତି ।
ଇତି ପ୍ରାୟୋ ଭାବାଃ ସ୍ଫୁରଦବଧିମୁଦ୍ରାମୁକୁଳିତାଃ
ସତାଂ ପ୍ରଜ୍ଞୋନ୍ମେଷଃ ପୁନରୟମସୀମା ବିଜୟତେ ॥୧୧୩॥

ଅର୍ଥ—ପୃଥିବୀ ସମୁଦ୍ର ପରିବେଷ୍ଟନୀଦ୍ୱାରା ସୀମିତ । ସମୁଦ୍ର ମଧ୍ୟ ଶତଶତ ଯୋଜନ ବିସ୍ତୃତିରେ ସୀମାବଦ୍ଧ । ପଥିକ ସ୍ୱରୂପ ସୂର୍ଯ୍ୟ ମଧ୍ୟ ପ୍ରତିଦିନ ଆକାଶର ସୀମା କଳନା କରୁଛନ୍ତି । ତେଣୁ ବିଶ୍ୱର ସମସ୍ତ ପଦାର୍ଥ ନିଜନିଜର ସୀମା ମଧ୍ୟରେ ଆବଦ୍ଧ । କିନ୍ତୁ ସଜ୍ଜନମାନଙ୍କର ନବନବୋନ୍ମେଷଶାଳିନୀ ଯେଉଁ ପ୍ରଜ୍ଞା ଅଛି, ତାହାର କେବଳ କୌଣସି ସୀମା ନାହିଁ ।

ଯଂ ସନ୍ତୋଷସୁଖପ୍ରମୋଦମୁଦିତାସ୍ତେଷାଂ ନ ଭିନ୍ନା ମୁଦୋ
ଯେ ତ୍ୱନ୍ୟେ ଧନଲୁବ୍ଧସଂକୁଳଧିୟସ୍ତେଷାଂ ନ ତୃଷ୍ଣା ହତା
ଇତ୍ଥଂ କସ୍ୟ କୃତେ କୃତଃ ସ ବିଧିନା ତାଦୃକ୍ପଦଂ ସମ୍ପଦାଂ
ସ୍ୱାତ୍ମନ୍ୟେବ ସମାପ୍ତହେମମହିମା ମେରୁର୍ନ ମେ ରୋଚତେ ॥୧୧୪॥

ଅର୍ଥ—ଯେଉଁମାନେ ସନ୍ତୋଷ ସୁଖରେ ପ୍ରମୁଦିତ ସେମାନେ କେବେ-ହେଲେ ଦୁଃଖଭୋଗ କରନ୍ତି ନାହିଁ । ଧନଲୋଭରେ ଯେଉଁମାନଙ୍କ ବୁଦ୍ଧି ସର୍ବଦା ବ୍ୟାକୁଳ ସେମାନଙ୍କର ତୃଷ୍ଣା କେବେହେଲେ ଶାନ୍ତ ହୁଏନାହିଁ । ତେବେ ବିଧାତା ଏପରି କାହିଁକି କରିଛି ଏବଂ କାହାପାଇଁ ଏତେ ଧନସମ୍ପଦ ସୁଖଭୋଗ ସୃଷ୍ଟି କରିଛି ? ସେ ଯାହାହେଉ, ସମସ୍ତ ଧନରତ୍ନର ଆଧାର ସୁମେରୁ ପର୍ବତକୁ ନଜର କରିପାରିଲେ ମଧ୍ୟ ମୁଁ ଖୁସି ହେବନାହିଁ କି ସେପ୍ରକାର ଅଭିଳାଷ ମୋର ନାହିଁ ।

ପରିବର୍ତ୍ତିନି ସଂସାରେ ମୃତଃ କୋ ବା ନ ଜାୟତେ ।
ସ ଜାତୋ ଯେନ ଜାତେନ ଯାତି ବଂଶଃ ସମୁନ୍ନତିମ୍ ॥୧୧୫॥

ଅର୍ଥ—ପରିବର୍ତ୍ତିନଶୀଳ ଏହି ସଂସାରରେ ଜନ୍ମ ହୋଇ କିଏବା ମୃତ୍ୟୁ-ବରଣ ନକରେ ? ଅନେକ ଜନ୍ମ ହୁଅନ୍ତି ଓ ମରନ୍ତି । କିନ୍ତୁ ଯାହାଦ୍ୱାରା ବଂଶର ସମୁନ୍ନତି ସାଧିତ ହୁଏ ତା'ର ଜନ୍ମହେବା ସାର୍ଥକବୋଲି କୁହାଯାଏ ।

ଦୁର୍ଗ୍ରାହ୍ୟଂ ହୃଦୟଂ ଯଥୈବ ବଦନଂ ସଦ୍ଦର୍ପଣାନ୍ତର୍ଗତଂ
ଭାବଃ ପର୍ବତସୂକ୍ଷ୍ମମାର୍ଗବିଷମଃ ସ୍ତ୍ରୀଣାଂ ନ ବିଜ୍ଞାୟତେ ।
ଚିତ୍ତଂ ପୁଷ୍କରପତ୍ରତୋୟତରଳଂ ବିଦ୍ୱଦ୍‌ଭିରାଶଂସିତଂ
ନାରୀ ନାମ ବିଷାଙ୍କୁରୈରିବ ଲତା ଦୋଷୈଃ ସମଂ
ବର୍ଦ୍ଧିତା ॥୧୧୬॥

ଅର୍ଥ—ଉତ୍ତମ ଦର୍ପଣରେ ପ୍ରତିବିମ୍ବିତ ମୁଖକୁ ଯେପରି ସ୍ପର୍ଶ କରିହୁଏ ନାହିଁ, ସେହିପରି ସ୍ତ୍ରୀଲୋକମାନଙ୍କର ହୃଦୟକୁ ବୁଝିହୁଏ ନାହିଁ । ପର୍ବତର ବିଷମ ସୂକ୍ଷ୍ମ ମାର୍ଗପରି ସ୍ତ୍ରୀମାନଙ୍କର ମନୋଗତ ଭାବ ଜାଣିହୁଏ ନାହିଁ । ପଣ୍ଡିତମାନେ ନାରୀମାନଙ୍କର ଚିତ୍ତକୁ ପଦ୍ମପତ୍ରସ୍ଥିତ ଜଳପରି ଚଞ୍ଚଳ ବୋଲି କହିଛନ୍ତି । ବିଷ ଅଙ୍କୁରରୁ ଜାତ ଓ ବର୍ଦ୍ଧିତ ଲତାପରି ନାରୀ ଏହିସବୁ ଦୁର୍ଗୁଣ ସହିତ ବଢ଼ିଥିବାର ଜଣାଯାଏ ।

ଯନ୍ନାଗାମଦବାରିଭିନ୍ନକରଟାସ୍ତିଷ୍ଠନ୍ତି ନିଦ୍ରାଳସା
ଦ୍ୱାରେ ସ୍ୱର୍ଣ୍ଣବିଭୂଷିତାଶ୍ଚ ତୁରଗା ବଲ୍‌ଗନ୍ତି ଯଦ୍ଦର୍ପିତାଃ
ବୀଣାବେଣୁମୃଦଙ୍ଗଶଙ୍ଖପଣବୈଃ ସୁପ୍ତୋତ୍‌ଥିତୈର୍ବୋଧ୍ୟତେ
ତତ୍ସର୍ବଂ ସୁରଲୋକସିଦ୍ଧିସଦୃଶଂ ଧର୍ମସ୍ୟ ବିସ୍ଫୂର୍ଜିତମ୍ ॥୧୧୭॥

ଅର୍ଥ—ଧର୍ମବଳ ଥିବା ଲୋକର ଦ୍ୱାରଦେଶରେ ମଦୋନ୍ମତ୍ତ ହସ୍ତୀସମୂହ ଥାଆନ୍ତି ଏବଂ ସ୍ୱର୍ଣ୍ଣ ଅଳଙ୍କାରରେ ଭୂଷିତ ଓ ଗର୍ବିତ ଅଶ୍ୱସମୂହ ହ୍ରେଷାରବ କରନ୍ତି । ବୀଣା, ବେଣୁ, ମୃଦଙ୍ଗ, ଶଙ୍ଖ, ପଟହାଦି ବାଦ୍ୟଧ୍ୱନିରେ ତାର ନିଦ୍ରା ଦୂରହୁଏ । ଏ ସମସ୍ତ ସ୍ୱର୍ଗୀୟ ସୁଖଭୋଗ ଧର୍ମବଳରୁହିଁ ଲୋକକୁ ମିଳିଥାଏ ।

ସ୍ଥୂଳତ୍ୱସ୍ଫୂର୍ତି ଭୁଜୟୋରନ୍ତରମାଯୂତକରବାଳକରରୁହବିଦୀର୍ଣ୍ଣମ୍ ।
ବିଜୟଶ୍ରୀର୍ବୀରାଣାଂ ବ୍ୟୁତ୍ପନ୍ନପ୍ରୌଢ଼ବନିତେବ ॥୧୧୮॥

ଅର୍ଥ—ଦୀର୍ଘ ଓ ତୀକ୍ଷ୍ଣ ନଖାଘାତରେ ବିଦୀର୍ଣ୍ଣା ଚତୁରା ପ୍ରୌଢ଼ା ରମଣୀ ନାୟକର ବାହୁବେଷ୍ଟନୀକୁ ଆଶ୍ରୟ କଲାପରି ବିଜୟଲକ୍ଷ୍ମୀ ବୀରମାନଙ୍କ ଖଡ୍‌ଗ-ଶୋଭିତ ଭୁଜଦ୍ୱୟର ମଧ୍ୟଭାଗରେ ରହିବାକୁ ଇଚ୍ଛାକରେ ।

ବିରମ ବିରସାୟାସାଦସ୍ମାଦ୍ଦୁରଧ୍ୟବସାୟତୋ
ବିପଦି ମହତାଂ ଧୈର୍ଯ୍ୟ ଧ୍ୱଂସଂ ଯଦୀକ୍ଷିତୁମୀହତେ ।
ଅୟି ଜଡ଼ବିଧେ କଳ୍ପାପାୟେ ବ୍ୟପେତନିଜକ୍ଷମାଃ
କୁଳଶିଖରିଣଃ କ୍ଷୁଦ୍ରାଃ ନୈତେ ନ ବା ଜଳରାଶୟଃ ॥୧୧୯॥

ଅର୍ଥ—ହେ ଜଡ଼ବିଧି ! ବିପଦରେ ମହାପୁରୁଷମାନଙ୍କର ଧୈର୍ଯ୍ୟଚ୍ୟୁତି ଦେଖିବା ପାଇଁ ତୁ ଯେଉଁ ନିଷ୍ଫଳ ପ୍ରୟାସ କରୁଛୁ ସେଥିରୁ ନିବୃତ୍ତ ହେବା ଉଚିତ । କାରଣ, କଳ୍ପାନ୍ତକାଳରେ ମଧ୍ୟ ସପ୍ତକୁଳାଚଳ (କୁଳ ପର୍ବତ) ଓ ସପ୍ତସାଗର ନିଜ ନିଜର ଗୁରୁତ୍ୱ ଓ ଗାମ୍ଭୀର୍ଯ୍ୟ ତ୍ୟାଗକରି ଲଘୁ ଓ କ୍ଷୁଦ୍ର ହୋଇଯିବେ ନାହିଁ ।

ବରଂ ଶୃଙ୍ଗୋତ୍ତୁଙ୍ଗାଦ୍‌ଗୁରୁଶିଖରିଣଃ କ୍ୱାପି ବିଷମେ
ପତିତ୍ୱାୟଂ କାୟଃ କଠିନଦୃଷଦନ୍ତର୍ବିଦଳିତଃ ।
ବରଂ ନ୍ୟସ୍ତୋ ହସ୍ତଃ ଫଣିପତିମୁଖେ ତୀକ୍ଷ୍ଣଦଂଷ୍ଟ୍ରେ
ବରଂ ବହ୍ନୌ ପାତସ୍ତଦପି ନ କୃତଃ ଶୀଳବିଲୟଃ ॥୧୬୦॥

ଅର୍ଥ—ଉତ୍ତୁଙ୍ଗ ଗିରିଶିଖରରୁ କଠିନ ଶିଳାଖଣ୍ଡ ଉପରେ ପଡ଼ି ଛେଚି ହୋଇ ଏ ଦେହ ନଷ୍ଟ ହୋଇଯିବା ବରଂ ଶ୍ରେୟସ୍କର । ତୀକ୍ଷ୍ଣଦନ୍ତ ବିଶିଷ୍ଟ ବିଷଧର ସର୍ପ ମୁଖରେ ହାତ ପୂରାଇ ଅଥବା ଅଗ୍ନିରେ ଜଳିପୋଡ଼ି ହୋଇ ମରଣ ବରଣ କରିବା ଶ୍ରେୟସ୍କର । କିନ୍ତୁ କୌଣସି ପରିସ୍ଥିତିରେ ନିଜର ସଦାଚାର ତ୍ୟାଗ କରିବା ଉଚିତ ନୁହେଁ ।

ଅଭିମୁଖନିହତସ୍ୟ ସତସ୍ତିଷ୍ଠତୁ ତାବଜ୍ଜୟୋଽଥ ବା ସ୍ୱର୍ଗଃ ।
ଉଭୟବଳସାଧୁବାଦଃ ଶ୍ରବଣସୁଖୋଽସୌ ବିତାତ୍ୟର୍ଥମ୍ ॥୧୬୧॥

ଅର୍ଥ—ସମ୍ମୁଖ ସମରରେ ଶତ୍ରୁ ସହିତ ଯୁଦ୍ଧ କରି ନିହତ ହୋଇଥିବା ବୀରର ବିଜୟଲାଭ ହେଉ ଅଥବା ସ୍ୱର୍ଗଲାଭ ହେଉ ତାହା ଗୁରୁତ୍ୱପୂର୍ଣ୍ଣ ନୁହେଁ । ନିହତ ବୀର ଉଦ୍ଦେଶ୍ୟରେ ଉଭୟ ପକ୍ଷ ଯେଉଁ ଜୟଧ୍ୱନି ଓ ସାଧୁ ସାଧୁ ଧ୍ୱନି କରନ୍ତି ତାହାହିଁ ଶ୍ରୁତିସୁଖକର ହୋଇଥାଏ ।

କିଂ କୂର୍ମସ୍ୟ ଭରବ୍ୟଥା ନ ବପୁଷି କ୍ଷ୍ମାଂ ନ କ୍ଷିପତ୍ୟେଷ ଯତ୍
କିଂ ବା ନାସ୍ତି ପରିଶ୍ରମୋ ଦିନପତେରାସ୍ତେ ନ ଯନ୍ନିଶ୍ଚଳଃ ।
କିଂ ତ୍ୱଙ୍ଗୀକୃତମୁତ୍ସୃଜନ୍ କୃପଣ ଇବ ଶ୍ଳାଘ୍ୟୋଜନୋ ଲଜ୍ଜତେ
ନିର୍ବାହଃ ପ୍ରତିପନ୍ନବସ୍ତୁନି ସତାମେତଦ୍ଧି ଗୋତ୍ରବ୍ରତମ୍ ॥୧୬୨॥

ଅର୍ଥ—ପୃଥିବୀକୁ ନିଜ ପୃଷ୍ଠରୁ ତଳକୁ ପକାଇ ଦେଉନାହିଁ ବୋଲି କୂର୍ମର ଶରୀରରେ କଷ୍ଟ ହେଉନାହିଁ କି ? ସୂର୍ଯ୍ୟ ସର୍ବଦା ପରିକ୍ରମା କରୁଥିବାରୁ ଓ ସ୍ଥିର ରହୁ ନଥିବାରୁ ତାଙ୍କର କଣ ପରିଶ୍ରମଜନିତ ଖେଦ ନାହିଁ କି ? କଷ୍ଟ ହେଉଥିଲେ ମଧ୍ୟ କୂର୍ମ ଓ ସୂର୍ଯ୍ୟ ନିଜର କର୍ତ୍ତବ୍ୟ ପାଳନ କରୁଛନ୍ତି । କାରଣ, ସଜ୍ଜନମାନେ ସାଧାରଣ ଲୋକଙ୍କ ପରି ନିଜ ଅଙ୍ଗୀକାରକୁ ତ୍ୟାଗ

କଲେ ଲଜ୍ଜା ଅନୁଭବ କରନ୍ତି । ଅଙ୍ଗୀକାର ପାଳନ କରିବା ଓ କର୍ତ୍ତବ୍ୟ ନିର୍ବାହ କରିବା ସଜ୍ଜନମାନଙ୍କର ସ୍ୱଭାବ ।

ଦୁରାଦର୍ଥଂ ଘଟୟତି ନବଂ ଦୂରତଶ୍ଚାପଶବ୍ଦଂ
ତ୍ୟକ୍ତ୍ୱା ଭୂୟୋ ଭବତି ନିରତଃ ସତ୍କଥାପାଦନେଷୁ ।
ମନ୍ଦଂ ମନ୍ଦଂ ରଚୟତି ପଦଂ ଲୋକଚିତ୍ତାନୁବୃତ୍ତ୍ୟା
କାମଂ ମନ୍ତ୍ରୀ କବିରିବ ସଦା ଖେଦଭାରୈରମୁକ୍ତଃ ॥୧୨୩॥

ଅର୍ଥ—କବିମାନଙ୍କ ପରି ମନ୍ତ୍ରୀ ମଧ୍ୟ ସର୍ବଦା କଠୋର ପରିଶ୍ରମ କରନ୍ତି । କବି ଅପଶବ୍ଦ ତ୍ୟାଗକରି ଅର୍ଥପୂର୍ଣ୍ଣ ପଦ ଯୋଜନା କଲାପରି ମନ୍ତ୍ରୀ ଦୂରସ୍ଥାନରୁ ଅଶ୍ଳୀଳବାଦ ପ୍ରାପ୍ତି ପାଇଁ ଉଦ୍ୟମ କରନ୍ତି । କବି ସୁନ୍ଦର କଥା ରଚନା କଲାପରି ମନ୍ତ୍ରୀ ରାଜ୍ୟ ସମୃଦ୍ଧାର୍ଥ ବୃତ୍ତାନ୍ତ ସଂଗ୍ରହ କରିବାରେ ବ୍ୟସ୍ତ ରହନ୍ତି । କବି ଲଳିତ ପଦାବଳୀ ଦ୍ୱାରା ଲୋକଚିତ୍ତାନୁରଞ୍ଜନ କଲାପରି ମନ୍ତ୍ରୀ ଲୋକ-ମାନଙ୍କର ଚିତ୍ତବୃତ୍ତି ଅନୁଧ୍ୟାନ କରି ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତି । ତେଣୁ କବି ଓ ମନ୍ତ୍ରୀ ଉଭୟ ଖେଦଭାରରୁ ମୁକ୍ତ ହୋଇପାରନ୍ତି ନାହିଁ ।

ଯଦି ନାମ ଦୈବଗତ୍ୟା ଜଗଦସରୋଜଂ କଦାଚିଦପି ଜାତମ୍ ।
ଅବକର ନିକରଂ ବିକିରତି ତତ୍କିଂ କୃକବାକୁରିବ ହଂସଃ ॥୧୨୪॥

ଅର୍ଥ—ଦୈବାତ୍ ଯଦି କୌଣସି କାରଣରୁ ସମସ୍ତ ଜଗତ୍ ପଦ୍ମଶୂନ୍ୟ ହୋଇଯିବ ତେବେ ହଂସ କଣ କୁକୁଡ଼ା ପରି ଆବର୍ଜନାକୁ ଘାଣ୍ଟିବ ? ତେଣୁ ହଂସ ଯେପରି କୁକୁଡ଼ା ପରି ଆଚରଣ କରେନାହିଁ, ସେହିପରି ସଜ୍ଜନ ବ୍ୟକ୍ତି କୌଣସି ପରିସ୍ଥିତିରେ ବି ଦୁର୍ଜନବତ୍ ଆଚରଣ କରନ୍ତିନାହିଁ ।

ଦୈବେନ ପ୍ରଭୁଣା ସ୍ୱୟଂ ଜଗତି ଯଦ୍ୟସ୍ୟ ପ୍ରମାଣୀକୃତଂ
ତତ୍ତସ୍ୟୋପନମେନ୍ମନାଗପି ମହାନ୍ନୈବାଶ୍ରୟଃ କାରଣମ୍ ।

ସର୍ବାଶାପରିପୂରକେ ଜଳଧରେ ବର୍ଷତ୍ୟପି ପ୍ରତ୍ୟହଂ
ସୂକ୍ଷ୍ମା ଏବ ପତନ୍ତି ଚାତକମୁଖେ ଦ୍ୱି ତ୍ରାଃ ପୟୋବିନ୍ଦବଃ ॥୧୨୫॥

ଅର୍ଥ—ପୂର୍ବଜନ୍ମାର୍ଜିତ ଅଦୃଷ୍ଟ ବଳରେ ଦୈବ ଯାହା ଭାଗ୍ୟରେ ଯାହା ପାଇବା କଥା ଲେଖିଦେଇଛି ସେ ତାହାହିଁ ପାଇଥାଏ ଅଥବା ପ୍ରାପ୍ୟ ବସ୍ତୁ ସ୍ୱୟଂ ତା' ପାଖରେ ପହଞ୍ଚିଯାଏ । ସମଗ୍ର ଆକାଶରେ ପୂରି ରହିଥିବା ମେଘ ପ୍ରତିଦିନ ଯେତେ ଜଳ ବର୍ଷା କଲେବି ଚାତକ ମୁଖରେ ସେଥିରୁ ଦୁଇ-ତିନି ବିନ୍ଦୁ ମାତ୍ର ଜଳ ପଡ଼ିଥାଏ ।

**(ଗ) ନବପତ୍ର ପ୍ରକାଶନ, କଲିକତା, ୧୯୮୩ ସଂସ୍କରଣର ଅଧିକ ଶ୍ଳୋକ—**

ପ୍ରିୟା ନ୍ୟାଯ୍ୟା ବୃତ୍ତିର୍ମଳିନମସୁଭଙ୍ଗେଽପ୍ୟସୁକରଂ
ତ୍ୱସନ୍ତୋ ନାଭ୍ୟର୍ଥ୍ୟାଃ ସୁହୃଦପି ଚ ଯାଚ୍ୟଃ କୃଶଧନଃ ।
ବିପଦ୍ୟୁଚ୍ଚୈଃ ସ୍ଥେୈର୍ଯ୍ୟଂ ପଦମନୁବିଧେୟଂ ଚ ମହତାଂ
ସତାଂ କେନୋଦ୍ଦିଷ୍ଟଂ ବିଷମମସିଧାରାବ୍ରତମିଦମ୍ ॥୧୨୬॥

ଅର୍ଥ—ସର୍ବଦା ପ୍ରୀତିକର ଓ ନ୍ୟାୟସଙ୍ଗତ କାର୍ଯ୍ୟ କରିବା ଉଚିତ । ପ୍ରାଣଗଲେ ମଧ୍ୟ କେବେହେଲେ ନିନ୍ଦିତ କର୍ମ କରିବା ଉଚିତ ନୁହେଁ । ଦୁର୍ଜନକୁ କେବେହେଲେ ପ୍ରାର୍ଥନା କରିବା ଉଚିତ ନୁହେଁ । ମିତ୍ର ହୋଇଥିଲେ ଧନହୀନଠାରୁ ଧନ ପ୍ରାର୍ଥନା କରିବା ଅନୁଚିତ । ବିପଦରେ ମଧ୍ୟ ମର୍ଯ୍ୟାଦା ଲଙ୍ଘନ ନକରି ମହାପୁରୁଷମାନଙ୍କ ପନ୍ଥା ଅନୁସରଣ କରିବା ବିଧେୟ । ଖଡ଼୍‌ଗର ଧାରା ପରି ତୀକ୍ଷ୍ଣ ସଜ୍ଜନମାନଙ୍କ ଅନୁସରଣୀୟ ଏହି ଦୁଃସାଧ୍ୟ ବ୍ରତା-ଚରଣ ପାଇଁ କିଏ ଉପଦେଶ ଦେଇଛି ?

ଯେନୈବାମ୍ବରଖଣ୍ଡେନ ସଂବୃତୋ ନିଶି ଚଂଦ୍ରମାଃ ।
ତେନୈବ ଚ ଦିବା ଭାନୁରହୋ ଦୌର୍ଗତ୍ୟମେତୟୋଃ ॥୧୨୭॥

ଅର୍ଥ—ଆକାଶ ରୂପକ ଯେଉଁ ବସ୍ତ୍ରଖଣ୍ଡ ଦ୍ୱାରା ଚନ୍ଦ୍ର ରାତିରେ ଆଚ୍ଛାଦିତ ହୁଏ, ଦିନରେ ସେହି ବସ୍ତ୍ରଖଣ୍ଡଦ୍ୱାରା ସୂର୍ଯ୍ୟ ବି ଆଚ୍ଛାଦିତ ହୁଅନ୍ତି । ହାୟ, ଏ ମାନଙ୍କର କି ଦୁର୍ଗତି !

ଅୟମମୃତନିଧାନଂ ନାୟକୋଽପ୍ୟୋଷଧୀନାଂ
ଶତଭିଷଗନୁଯାତଃ ଶମ୍ଭୁମୂର୍ଦ୍ଧ୍ନୋଽବତଂସଃ ।
ବିରହୟତି ନ ଚୈନଂ ରାଜଯକ୍ଷ୍ମା ଶଶାଙ୍କମ୍
ହତବିଧି ପରିପାକଃ କେନ ବା ଲଙ୍ଘନୀୟଃ ॥୧୨୮॥

ଅର୍ଥ—ଏହି ଚନ୍ଦ୍ର ଅମୃତର ଆଧାର, ଓଷଧିର ନାୟକ ଓ ଶିବଙ୍କ ମସ୍ତକର ଅଲଙ୍କାର । ଶତ ସଂଖ୍ୟକ ବୈଦ୍ୟ ତାଙ୍କୁ ଅନୁସରଣ କରନ୍ତି । ତଥାପି ରାଜଯକ୍ଷ୍ମା ଚନ୍ଦ୍ରଙ୍କୁ ଆକ୍ରମଣ କରେ । ତେଣୁ ଦୁର୍ଭାଗ୍ୟର ପରିଣତିକୁ କିଏବା ଲଙ୍ଘନ କରିପାରିବ ?

ପ୍ରିୟସଖିବିପଦ୍ଦଣ୍ଡାଘାତପ୍ରପାତପରମ୍ପରା-
ପରିଚୟବଲେ ଚିନ୍ତାଚକ୍ରେ ନିଧାୟ ବିଧିଃ ଖଳଃ ।
ମୃଦମିବ ବଳାତ୍ପିଣ୍ଡୀକୃତ୍ୟ ପ୍ରଗଲ୍‌ଭକୁଳାଳବଦ୍
ଭ୍ରମୟତି ମନୋ ନୋ ଜାନୀମଃ କିମତ୍ର ବିଧାସ୍ୟତି ॥୧୨୯॥

ଅର୍ଥ—ହେ ବନ୍ଧୁ ! ଦୁଷ୍ଟ ବିଧାତା ଚତୁର କୁମ୍ଭକାର ପରି ବଳପୂର୍ବକ ମନକୁ ମାଟି ଚକଟିଲା ପରି ଚକଟି ପିଣ୍ଡୁଳା କରେ ଏବଂ ବିପତ୍ତିରୂପକ ଦଣ୍ଡରେ ବାଡ଼େଇ ବାଡ଼େଇ ଚିନ୍ତାଚକ୍ରରେ ରଖି ସବୁବେଳେ ଘୂରାଇଥାଏ । ସେଥିରୁ କଣ ସେ କରିବ ତାହା କହିବା ସମ୍ଭବ ନୁହେଁ ।

ଶୁଭ୍ରଂ ସଦ୍ମ ସବିଭ୍ରମା ଯୁବତୟଃ ଶ୍ୱେତାତପତ୍ରୋଜ୍ଜ୍ୱଳା
ଲକ୍ଷ୍ମୀରିତ୍ୟନୁଭୂୟତେ ଚିରମନୁସ୍ୟୂତେ ଶୁଭେ କର୍ମଣି ।
ବିଚ୍ଛିନ୍ନେ ନିତରାମନଙ୍ଗକଲହକ୍ରୀଡ଼ାତ୍ରୁଟତ୍ତନ୍ତୁକଂ
ମୁକ୍ତାଜାଲମିବ ପ୍ରୟାତି ଝଟିତି ଭ୍ରଶ୍ୟଦ୍ଦିଶୋଽଦୃଶ୍ୟତାମ୍ ॥୧୩୦॥

ଅର୍ଥ—ସୁରମ୍ୟ ଅଟ୍ଟାଳିକା, ବିଳାସିନୀ ରମଣୀ ଓ ଏକଛତ୍ର ନିଷ୍କଳଙ୍କ ରାଜ୍ୟସମ୍ପଦକୁ ପୁଣ୍ୟବଳ ଥିବାଯାଏ ଲୋକ ଉପଭୋଗ କରିଥାଏ । କିନ୍ତୁ

